# ଦେଶବନ୍ଧୁ ଚିତ୍ତରଞ୍ଜନ

କଟକ ଟ୍ରେଡ଼ିଂ କମ୍ପାନୀ
ବାଲୁବଜାର, କଟକ-୨

ଲେଖିକା
ଶ୍ରୀମତୀ ସୁଦୀପା ରାୟ

# ଦେଶବନ୍ଧୁ ଚିତ୍ତରଞ୍ଜନ

ଲେଖିକା :

**ଶ୍ରୀମତୀ ସୁଦୀପା ରାୟ**

ଅଧ୍ୟାପିକା, ରମାଦେବୀ ମହିଳା ମହାବିଦ୍ୟାଳୟ, ଭୁବନେଶ୍ୱର

ପ୍ରକାଶକ :

**କଟକ ଟ୍ରେଡ଼ିଂ କମ୍ପାନୀ**

ବାଲୁ ବଜାର, କଟକ-୨

ପ୍ରକାଶକାଳ :

**୧୯୯୧, ପ୍ରଥମ ମୁଦ୍ରଣ**

ମୁଦ୍ରଣ

**ଭାରତୀ ପ୍ରେସ**

ବାମ୍ଫି ସାହି, କଟକ ୯

ମୂଲ୍ୟ :

**ପାଞ୍ଚ ଟଙ୍କା ମାତ୍ର**

# DESHABANDHU CHITARANJAN

Writer :

**Smt. Sudeepa Roy**

R. D. Womens College, Bhubaneswar

Published by :

**The Cuttack Trading Co.**

Balu Bazar, Cuttack-2

Edition :

**First Edition, 1991**

Printed by :

**Bharati Press**

Bamphi Sahi Cuttack-9

Price :

**Rupees Five Only**

# ମୁଖବନ୍ଧ

ଭାରତ ମାତାଙ୍କ ଯେଉଁ କୃତୀ ସନ୍ତାନମାନଙ୍କ ଅସୀମ ତ୍ୟାଗ, ଧୈର୍ଯ୍ୟ, ଉତ୍ସାହ, ଆତ୍ମବଳ ଓ ସାହସିକତା ପାଇଁ ଆଜି ଆମେମାନେ ଏବଂ ଆମର ଉତ୍ତର ଦାୟାଦମାନେ ସ୍ୱାଧୀନତାର ସ୍ୱାଦ ଅନୁଭବ କରିବାକୁ ସମର୍ଥ ହୋଇଛୁ, ସେହି ମହାନ୍ ତ୍ୟାଗୀ, ବୀର, ଦେଶ-ସାଧକ, ଶରନନସ୍ୟ, ଜନନାୟକମାନଙ୍କ ତ୍ୟାଗପୂତ ଜୀବନୀ ସମ୍ବନ୍ଧରେ ଆମମାନଙ୍କର ଜ୍ଞାନ ଅତି ସୀମିତ । ଦୀର୍ଘ ଶତ ଶତ ବର୍ଷ ବ୍ୟାପୀ ପରାଧୀନତାର ଶୃଙ୍ଖଳରେ ଜର୍ଜରିତ ଭାରତ ମାତାଙ୍କ ମୁକ୍ତିପାଇଁ ଯେଉଁ ବୀର ସନ୍ତାନମାନେ ନିଜ ଜୀବନକୁ ତିଳତିଳ କରି ଉତ୍ସର୍ଗ କରି ଦେଇଥିଲେ ଏବଂ ସ୍ୱାଧୀନ ଭାରତର ସୁନେଲି ସ୍ୱପ୍ନକୁ ମନରେ ଆଙ୍କୁଥିଲେ, ସେମାନଙ୍କର ସେହି ରୋମାଞ୍ଚପୂର୍ଣ୍ଣ ଐତିହାସିକ ଘଟଣାବଳୀକୁ ରୋମନ୍ଥନ କଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ତତ୍ ସଙ୍ଗ ସଙ୍ଗେ ସ୍ୱାଧୀନୋତ୍ତର ବର୍ତ୍ତମାନ ଭାରତ ବର୍ଷ ସହିତ ତୁଳନା କଲେ ଅନ୍ତରର ଅମ୍ଳାନ ହୋଇ ଉଠେ । ଆଜିର ଭାରତ ବର୍ଷ ପରାଧୀନ ଭାରତ ଠାରୁ ମଧ୍ୟ ଅତି ଶୋଚନୀୟ ଅବସ୍ଥା ଦେଇ ଗତି କରୁଛି । ସମାଜ ଆଜି ପତନୋନ୍ମୁଖୀ । ନୈତିକ ଭାବନା, ଆଦର୍ଶ ମୂଲ୍ୟବୋଧଗୁଡ଼ିକ ଆଜି ଉପେକ୍ଷିତ । ଶୃଙ୍ଖଳା, ଦୃଢ଼ତା, ସତ୍ୟବାଦିତା, ସାହସିକତା, ସାଧୁତା ଆଜି ନିଷ୍ପେଷିତ । ହିଂସା, ସ୍ୱାର୍ଥ, କ୍ଷମତାର ଲିପ୍ସା, ଅହଙ୍କାର, ଅର୍ଥଲାଳସା ଓ ଅସନ୍ତୋଷର ବହ୍ନି ଚତୁର୍ଦ୍ଦିଗରେ ପ୍ରଜ୍ୱଳିତ । ଏପରି ଅବକ୍ଷୟ ସମାଜରେ ଧ୍ୱଂସକାରୀ ବାତାବରଣ ମଧ୍ୟରେ ହତାଶାପୂର୍ଣ୍ଣ ଉନ୍ମତ୍ତତା ଭିତରେ ଆମର ଯୁବଗୋଷ୍ଠୀ ଓ ଗୋଟା ସମାଜ ଲକ୍ଷ୍ୟହୀନ ଭାବରେ ଆଗେଇ ଚାଲିଛନ୍ତି । ପଥଭ୍ରଷ୍ଟ ହୋଇ ପରେ ସେମାନଙ୍କ ଦଶା

ଅତ୍ୟନ୍ତ ଦୁଃଖଜନକ । ଆହୁରି ମଧ୍ୟ ଏଥି ସହିତ ଶାସନ ବ୍ୟବସ୍ଥା, ଗଣତନ୍ତ୍ର, ଶିକ୍ଷାପଦ୍ଧତି ଆଜି ବିପନ୍ନ । ଚତୁର୍ଦ୍ଦିଗରେ କେବଳ ବ୍ୟର୍ଥତା ଓ ହତାଶାର ହାହାକାର । ଛାତ୍ର ଓ ଯୁବଗୋଷ୍ଠୀମାନଙ୍କ ମଧ୍ୟରେ ଉତ୍ସାହ, ପ୍ରାଣଶକ୍ତି, କର୍ମପ୍ରବଣତା ଲୁପ୍ତପ୍ରାୟ । ଏପରି ସଙ୍କଟମୟ ମୁହୂର୍ତ୍ତରେ ସେମାନଙ୍କୁ ଉଚ୍ଚ ନୈତିକ ଭାବନା ଓ ଆଦର୍ଶରେ ଅନୁପ୍ରାଣିତ କରି ଉଚିତ ମାର୍ଗରେ ପରିଚାଳିତ କରିବା ଲାଗି ଜାତୀୟ ବୀର, ଦେଶଭକ୍ତମାନଙ୍କର ଜୀବନର କଣ୍ଟକିତ ସଂଘର୍ଷମୟ ଘଟଣା ସମ୍ବଳିତ ନୂତନ ମାନର ପୁସ୍ତକଗୁଡ଼ିକ ସେମାନଙ୍କୁ କର୍ମଚଞ୍ଚଳ, ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଜାତୀୟ ଏକତା ଓ ସଂହତି ରକ୍ଷାକରିବା ଦିଗରେ ପ୍ରେରଣା ଦେଇ ପାରିବ । ଏପରି ମହାନ୍ ଉଦ୍ଦେଶ୍ୟକୁ ସମ୍ମୁଖରେ ରଖି ମୁଁ ଭାରତ ମାତାଙ୍କ ପରମ ଅନୁରକ୍ତ, ଦେଶଭକ୍ତ ବୀର, ସର୍ବତ୍ୟାଗୀ, ନିର୍ଭୀକ ଦେଶବନ୍ଧୁ ଚିତ୍ତ ରଞ୍ଜନଙ୍କ ଜୀବନୀ ଉପରେ କିଞ୍ଚିତ ଆଲୋକପାତ କରିବାକୁ କରିବାକୁ ପ୍ରୟାସ କରିଛି ।

ପୁସ୍ତକଟିର ପ୍ରକାଶନ ଦିଗରେ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ କରିଥିବାରୁ ପ୍ରକାଶକ କଟକ ଟ୍ରେଡିଂ କମ୍ପାନୀଙ୍କ ନିକଟରେ ମୁଁ କୃତଜ୍ଞ ।



# ଉତ୍ସର୍ଗ

ଓଡ଼ିଶାର ଅଟକ୍ଷିତ ବଳିଷ୍ଠ, ନିର୍ଭୀକ, ଉତ୍ସାହୀ, ଦେଶପ୍ରେମୀ, ଯୁବଗୋଷ୍ଠୀଙ୍କୁ ଅର୍ପଣ କଲି ।

ଲେଖିକା

ଶ୍ରୀମତୀ ସୁଦୀପା ରାୟ

———

## ସ୍ୱାଧୀନତା ଆନ୍ଦୋଳନର ତ୍ୟାଗୀ ସେବକ
## ଦେଶବନ୍ଧୁ ଚିତ୍ତରଞ୍ଜନ

ଭାରତର ଆଧୁନିକ ଇତିହାସ ଗଠନରେ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ଦାନ ଅତୁଳନୀୟ । ସେ ତାଙ୍କ ଜୀବନକାଳ ମଧ୍ୟରେ ଯୁବଗୋଷ୍ଠୀଙ୍କୁ ଯେଉଁଭଳି ଦେଶାତ୍ମବୋଧ ଭାବନାରେ ଉଦ୍ବୁଦ୍ଧ କରିଥିଲେ ତାହାର ଦୃଷ୍ଟାନ୍ତ କେବଳ ଇଟାଲୀ ଦେଶର ପ୍ରଫେସର ଗାରିବାଲଡ଼ି ଓ ଭାରତର ନେତାଜୀ ସୁଭାଷ ବୋଷଙ୍କ ପରି ଅଳ୍ପ କେତେକ ବିଶ୍ୱ ନେତାଙ୍କ ମଧ୍ୟରେ ଦେଖିବାକୁ ମିଳେ । ସମଗ୍ର ଭାରତ ବର୍ଷର ମୁକ୍ତି କାମନାକୁ ଆଖି ଆଗରେ ରଖି ସେ ଦୃଢ଼ଭାବରେ ଘୋଷଣା କରିଥିଲେ ଯେ—"ଭାରତର ମୁକ୍ତି ପ୍ରୟାସରେ ନିଜକୁ ଉତ୍ସର୍ଗ କରିଥିବା ଅବସ୍ଥାରେ ଯଦି ମୋର ମୃତ୍ୟୁ ହୁଏ, ମୋର ବିଶ୍ୱାସ, ମୁଁ ମୋର ଏହି ପ୍ରାଣପ୍ରିୟ ଜନ୍ମଭୂମିରେ ବାରମ୍ବାର ଜନ୍ମ ଗ୍ରହଣ କରୁଥିବି ଓ ଦେଶର ମୁକ୍ତି ଲାଭ ଆଶାରେ ହିଁ ବଞ୍ଚି ରହିଥିବି, ଏବଂ ଯେ ପର୍ଯ୍ୟନ୍ତ ମୋର ଏହି ଆଶା ପୂରଣ ନ ହୋଇଛି ସେ ପର୍ଯ୍ୟନ୍ତ ମୁଁ ମୋର ସମସ୍ତ ଶକ୍ତି ସାମର୍ଥ୍ୟ ଖଟାଇ କାର୍ଯ୍ୟ କରୁଥିବି ।" ଦେଶ ମାତାଙ୍କ ପ୍ରତି ଏପରି ଗଭୀର ଅନୁରାଗ, ଶ୍ରଦ୍ଧା, ଓ ଦୃଢ଼ ମନୋବଳର ନିଦର୍ଶନ ଅତ୍ୟନ୍ତ ବିରଳ । ଦେଶବନ୍ଧୁ ପ୍ରକୃତରେ ଜଣେ ଅମୂଲ୍ୟ ରତ୍ନ ଥିଲେ । ବିଶ୍ୱାସ ଓ ପ୍ରଚଣ୍ଡ କର୍ମ ଦକ୍ଷତା ହିଁ ଥିଲା ତାଙ୍କ ଜୀବନର ଏକମାତ୍ର ପାଥେୟ ।

ବାଲ୍ୟକାଳଠାରୁ ଆରମ୍ଭ କରି ତାଙ୍କର ଦୀର୍ଘ କର୍ମମୟ ଜୀବନ ସମ୍ପର୍କରେ ଅବଗତ ହେବା ପ୍ରତ୍ୟେକ ଭାରତୀୟଙ୍କ କର୍ତ୍ତବ୍ୟ ।

ଚିତ୍ତରଞ୍ଜନ ୧୮୭୦ ମସିହା ନଭେମ୍ବର ପାଞ୍ଚ ତାରିଖରେ ପୂର୍ବବଙ୍ଗର ବିକ୍ରମପୁର ନାମକ ସ୍ଥାନରେ ଏକ ଆଭିଜାତ୍ୟ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଶ୍ରୀ ଭୁବନ ମୋହନ ଦାସ ଜଣେ ଉଦାର ଜ୍ଞାନୀ ବ୍ୟକ୍ତି ରୂପରେ ପ୍ରତିଷ୍ଠା ଲାଭ କରିଥିଲେ ଓ ତତ୍କାଳୀନ କଲିକତା ହାଇକୋର୍ଟରେ ଆଟର୍ଣ୍ଣୀ ରୂପରେ କାର୍ଯ୍ୟ କରୁଥିଲେ । ସଙ୍ଗୀତ ଓ ସାହିତ୍ୟ ପ୍ରତି ମଧ୍ୟ ତାଙ୍କର ଗଭୀର ଅନୁରାଗ ଥିଲା । ଦେଶବନ୍ଧୁଙ୍କ ମାତା ନିସ୍ତାରିଣୀ ଦେବୀ ଜଣେ ଧର୍ମପ୍ରାଣା ସ୍ନେହ ଅତିଥି ପରାୟଣା ମହିଳାରୂପେ ପରିଚିତା ଥିଲେ । ଚିତ୍ତରଞ୍ଜନଙ୍କ ଆଠଜଣ ଭାଇଭଉଣୀମାନଙ୍କ ମଧ୍ୟରୁ ସେ ଥିଲେ ଦ୍ୱିତୀୟ । ଅତି ସମ୍ଭ୍ରାନ୍ତ ଧନାଢ୍ୟ ପରିବାରରେ ଜନ୍ମ ଲାଭ କରିଥିବାରୁ ସେ ପ୍ରଥମେ ଲଣ୍ଡନ ମିଶନାରୀ ବିଦ୍ୟାଳୟରେ ଛାତ୍ର ଜୀବନ ଆରମ୍ଭ କରିଥିଲେ । ଏଣ୍ଟ୍ରାନ୍ସ ପାଶ୍ କଲାପରେ କଲିକତାର ପ୍ରସିଦ୍ଧ ପ୍ରେସିଡେନ୍ସୀ କଲେଜରୁ ୧୮୯୦ ମସିହାରେ କୃତିତ୍ୱର ସହ ସ୍ନାତକ ଡ଼ିଗ୍ରୀ ଲାଭ କରିଥିଲେ । ଇଂରାଜୀ ଭାଷାରେ ତାଙ୍କର ଗଭୀର ଦକ୍ଷତା ଥିଲା ଓ ତତ୍ ସଙ୍ଗେ ସଙ୍ଗେ ସେ ନିଜର ମାତୃଭାଷାକୁ ମଧ୍ୟ ଅତ୍ୟନ୍ତ ଭଲ ପାଉଥିଲେ । ଛାତ୍ର ଜୀବନରେ ସେ ଖୁବ୍ ଉଚ୍ଚ କୋଟିର ଯୁକ୍ତି ତର୍କ କରିପାରୁଥିଲେ ଏବଂ ଛାତ୍ର ସଂଘର ସମ୍ପାଦକ ମଧ୍ୟ ହୋଇଥିଲେ । ସେତେବେଳେ ଭାରତର ଜାତୀୟ କଂଗ୍ରେସର ଜଣେ ପ୍ରଧାନ କର୍ଣ୍ଣଧାର ଶ୍ରୀ ସୁରେନ୍ଦ୍ର ନାଥ-ବାନାର୍ଜୀ ଛାତ୍ର ସଂଘକୁ ଆସି ପ୍ରାୟ ବକ୍ତୃତା ଦେଉଥିଲେ । ଚିତ୍ତ-ରଞ୍ଜନ ତାଙ୍କ ବକ୍ତୃତା ଗୁଡ଼ିକ ଅତ୍ୟନ୍ତ ଆଗ୍ରହରେ ଶୁଣୁଥିଲେ ଏବଂ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧାଭାବ ରଖିଥିଲେ । ୧୮୯୦ ମସିହାରେ ଆଇ. ସି. ଏସ ପରୀକ୍ଷା ଦେବାକୁ ତାଙ୍କୁ ବିଲାତ ଯିବାକୁ ପଡ଼ିଥିଲା । ସେଠାରେ ବ୍ରିଟିଶ୍ ପାର୍ଲାମେଣ୍ଟର ଜଣେ ସଭ୍ୟ ମି. ମ୍ୟାକଲିଅନ୍ ତାଙ୍କ ସମ୍ମୁଖରେ ଭାରତ ଓ ଭାରତୀୟମାନଙ୍କ ବିରୁଦ୍ଧରେ ଅରେ କହି

ମନ୍ତବ୍ୟ ଦେଇ କହିଥିଲେ—"ଭାରତ ବର୍ଷରେ ପ୍ରକୃତ ସଭ୍ୟତା ବୋଲି କିଛି ନାହିଁ ଓ ହିନ୍ଦୁ ମୁସଲମାନମାନେ ସେଠାରେ କେବଳ କ୍ରୀତଦାସ ମାତ୍ର"। ତାଙ୍କର ଏପରି ବିରୂପ ମନ୍ତବ୍ୟରେ ଚିତ୍ତରଞ୍ଜନ କ୍ରୋଧରେ କିଷ୍ଟୁବ୍ଧ ହୋଇ ଏହା ବିରୁଦ୍ଧରେ ଏପରି ଦୃଢ଼ ପ୍ରତିବାଦ କରିଥିଲେ ଯେ, ଶେଷରେ ମିଃ ମ୍ୟାକଲିଅନ ତାଙ୍କ ପୂର୍ବ ମନ୍ତବ୍ୟଟିକୁ ଫେରାଇ ନେବାକୁ ବାଧ୍ୟ ହୋଇଥିଲେ ଏବଂ ଚିତ୍ତରଞ୍ଜନଙ୍କ ନିକଟରେ କ୍ଷମା ପ୍ରାର୍ଥନା କରିଥିଲେ। ବାସ୍ତବିକ ସେ ଦେଶ ମାତୃକାଙ୍କ ପ୍ରତି ଅପମାନକୁ ନିଜ ଜୀବନ ଠାରୁ ମଧ୍ୟ ଅଧିକ ଗୁରୁତ୍ୱ ଦେଉଥିଲେ। ୧୮୯୨ ମସିହାରେ ବିଲାତରେ ନିର୍ବାଚନ ସମୟରେ ଭାରତୀୟ ସ୍ୱୟଂ ଶାସନ ବିରୋଧୀ କେତେକ ବ୍ୟକ୍ତି ବକ୍ତୃତା ଛଳରେ ଭାରତୀୟଙ୍କ ବିରୁଦ୍ଧରେ କଟୁ ମନ୍ତବ୍ୟମାନ ଦେଲେ। ଏହା ଫଳରେ ବିଲାତରେ ରହୁଥିବା ଛାତ୍ରମାନଙ୍କ ମଧ୍ୟରେ ଗଭୀର ପ୍ରତିକ୍ରିୟା ସୃଷ୍ଟି ହେଲା ଏବଂ ଚିତ୍ତରଞ୍ଜନ ଏହି ରାଜନୈତିକ ଆନ୍ଦୋଳନରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ। ବିଲାତର ବିଭିନ୍ନ ସ୍ଥାନରେ ସେ ସ୍ୱାୟତ୍ତ ଶାସନ ସଂସ୍କାର ସପକ୍ଷରେ ବକ୍ତୃତାମାନ ଦେଇଥିଲେ। ସେଠାକାର ପ୍ରସିଦ୍ଧ ନେତା ଗ୍ଲାଡଷ୍ଟୋନଙ୍କ ସମେତ ବହୁ ଉଦାରଚେତା ନେତାମାନଙ୍କର ଦୃଷ୍ଟି ତାଙ୍କ ଉପରେ ପଡ଼ିଥିଲା ଫଳରେ ଏପରି ରାଜନୈତିକ କାର୍ଯ୍ୟ ଯୋଗୁଁ ସେ ସିଭିଲ ସର୍ଭିସ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ପାରି ନଥିଲେ।

୧୮୯୩ ମସିହାରେ ହିଁ ସେ ଭାରତକୁ ଫେରିଆସିଲେ ଓ ହାଇକୋର୍ଟରେ ଆଡ଼ଭୋକେଟ୍ ରୂପରେ ନିଜର ବୃତ୍ତି ଆରମ୍ଭ କଲେ।

ଏହି ନୂତନ କର୍ମକ୍ଷେତ୍ରରେ ପ୍ରାଥମିକ ଅବସ୍ଥାରେ ତାଙ୍କୁ ବହୁ ବାଧାବିଘ୍ନ ସହିବାକୁ ପଡ଼ିଥିଲା। ସେ ସମୟରେ ତାଙ୍କ ପିତା ଋଣ

ଘରରେ ବୁଡ଼ି ଯାଇଥିଲେ ଓ ପରିବାରର ଆର୍ଥିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇ ପଡ଼ିଥିଲା । ଏପରି ଅବସ୍ଥା ମଧ୍ୟରେ ଗତ କରୁଥିବା ସମୟରେ ମଧ୍ୟ ସେ କଲିକତା 'କରପୋରେଶନ୍' ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିଥିଲେ, ମାତ୍ର ପରାଜିତ ହୋଇଥିଲେ । କାଳକ୍ରମେ ୧୮୯୬ ମସିହା ବେଳକୁ ପିତା ଓ ପୁତ୍ର ଦୁହେଁ କରଜ ପରିଶୋଧ କରି ନ ପାରିବାରୁ ସେମାନଙ୍କ ସମସ୍ତ ସମ୍ପତ୍ତି ସରକାରଙ୍କ ଅଧୀନସ୍ଥ ହେଲା ଓ ସେ 'ଦେବାଳିଆ' (Bankrupt) ବୋଲି ଘୋଷିତ ହେଲେ । କିନ୍ତୁ ଏଥିପାଇଁ ସେ କ୍ଷଣେ ମାତ୍ର ବିଚଳିତ ନ ହୋଇ ନିଜର ସୁନାମ ପ୍ରତିଷ୍ଠା ଲାଗି ଅକ୍ଳାନ୍ତ ପରିଶ୍ରମ କରୁଥିଲେ । ସେ ଫୌଜଦାରୀ ମକଦ୍ଦମାଗୁଡ଼ିକ ହାତକୁ ନେଲେ ଓ ଏଥିପାଇଁ ବହୁ ସମୟରେ ମଫସଲ କୋର୍ଟମାନଙ୍କୁ ଯାଉଥିଲେ, ବହୁ ସମୟରେ ଜଣେ ବାରିଷ୍ଟର ରୂପରେ ତାଙ୍କର ଯେତିକି ପ୍ରାପ୍ୟ ତାହାଠାରୁ ମଧ୍ୟ ଅତି ସ୍ୱଳ୍ପ ଦେୟ ନେଇ ସେ କାର୍ଯ୍ୟ କରୁଥିଲେ ଓ ନିରପେକ୍ଷ ବିଚାରକ ରୂପରେ ଖ୍ୟାତି ଲାଭ କଲେ । ଧୀରେ ଧୀରେ ଜଣେ ଶ୍ରେଷ୍ଠ ଓକିଲ ରୂପରେ ତାଙ୍କର ସୁନାମ ବଢ଼ିବା ସଙ୍ଗେ ସଙ୍ଗେ ଆର୍ଥିକ ଅବସ୍ଥାର ମଧ୍ୟ ଉନ୍ନତି ଘଟିଥିଲା । ତାଙ୍କର ଓକିଲାତି ଜୀବନରେ ୧୯୦୮ ମସିହା ଏକ ଗୁରୁତ୍ୱପୂର୍ଣ୍ଣ ସମୟ, ସେତେବେଳେ ସେ ଫୌଜଦାରୀ ଓ ଦେଓ୍ୱାନି ଉଭୟ ଦିଗରେ ଜଣେ ସଫଳ ଆଇନଜୀବୀ ରୂପରେ ସୁନାମ ଲାଭ କରିଥିଲେ । ସେହି ସମୟରେ କେତେକ ବିପ୍ଳବୀ, ଦେଶପ୍ରେମୀ ଜାତୀୟ କାର୍ଯ୍ୟରେ ବିଶୃଙ୍ଖଳା ସୃଷ୍ଟି କରୁଥିବା ଅଭିଯୋଗରେ ଅଭିଯୁକ୍ତ ଆସାମୀମାନଙ୍କ ନିମନ୍ତେ ସେ ଓକିଲାତି ଆରମ୍ଭ କରିଥିଲେ । କଲିକତା ଚିଫ୍ ପ୍ରେସିଡେନ୍ସି ମାଜିଷ୍ଟ୍ରେଟ କୋର୍ଟରେ ରାଜଦ୍ରୋହ ଅପରାଧରେ ଅଭିଯୁକ୍ତ ହୋଇଥିବା ଆସାମୀ ଶ୍ରୀ ବିପିନ୍ ଚନ୍ଦ୍ର ପାଲ୍‌ଙ୍କ ସପକ୍ଷରେ ସେ ଲଢ଼ିଥିଲେ । ତାଙ୍କ ଜୀବନରେ ସେ ସମୟର ଆଉ

ଏକ ଗୁରୁତ୍ୱପୂର୍ଣ୍ଣ ମକଦ୍ଦମା ସମସ୍ତଙ୍କ ଘୋର ଦୃଷ୍ଟି ଆକର୍ଷଣ କରିଥିଲା ତାହା ହେଉଛି, 'ଅଲିପୁର ବୋମା ଷଡ଼ଯନ୍ତ୍ର ମକଦ୍ଦମା' ଏହି ଷଡ଼ଯନ୍ତ୍ରର ମୁଖ୍ୟ ଆସାମୀ ଭାବରେ ତତ୍କାଳୀନ 'ବନ୍ଦେମାତରମ୍' ପତ୍ରିକାର ସମ୍ପାଦକ, ମନସ୍ୱୀ ବିପ୍ଳବୀ ଶ୍ରୀ ଅରବିନ୍ଦ ଘୋଷ ଅଭିଯୁକ୍ତ ହୋଇଥିଲେ । ଉକ୍ତ ମକଦ୍ଦମା ଭାରତୀୟ ଜାତୀୟ ସଂଗ୍ରାମ ଇତିହାସରେ ଏକ ମୁଖ୍ୟ ସ୍ଥାନ ଗ୍ରହଣ କରିଥିଲା, ସେତେବେଳେ ରାଜନୈତିକ ଅପରାଧରେ ଅଭିଯୁକ୍ତ ଆସାମୀମାନଙ୍କୁ କଠୋର ଦଣ୍ଡ ଦିଆ ଯାଉଥିବା ଯୋଗୁଁ କଲିକତାର ମୁଖ୍ୟ ପ୍ରେସିଡେନ୍‌ସୀ ମାଜିଷ୍ଟ୍ରେଟ୍ ମି: କିଙ୍ଗ୍-ଫୋର୍ଡ ଲୋକ ଚକ୍ଷୁରେ ବିଶେଷ ଅପ୍ରିୟ ହୋଇଥିଲେ । ଚିତ୍ତରଞ୍ଜନ କିନ୍ତୁ ସେଠାରେ ଶ୍ରୀ ଅରବିନ୍ଦଙ୍କ ସପକ୍ଷରେ ଦୃଢ଼ ଭାବରେ ଲଢ଼ି ତାଙ୍କୁ ନିର୍ଦ୍ଦୋଷ ବୋଲି ଘୋଷଣା କରି ମୁକ୍ତ କରିଥିଲେ । ଅରବିନ୍ଦଙ୍କୁ ନିର୍ଦ୍ଦୋଷ ସାବ୍ୟସ୍ତ କରିବାକୁ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କୁ ଅନବରତ ଭାବରେ ପରିଶ୍ରମ କରିବାକୁ ପଡ଼ିଥିଲା । ସେ ନିଜର ସମସ୍ତ ବିଦ୍ୟା ବୁଦ୍ଧି ଓ ଶକ୍ତି ଖଟାଇ ପାଖାପାଖି ୧୦ ମାସ କାଳ ଅବିରତ ଭାବରେ ପରିଶ୍ରମ କରିଥିଲେ ଓ ମାମଲାଟିର ସମସ୍ତ ଖର୍ଚ୍ଚ ଏକାକୀ ବହନ କରିଥିଲେ । ଏଥିପାଇଁ ତାଙ୍କୁ ତାଙ୍କର ଯାନ ଘୋଡ଼ା ଗାଡ଼ିଟିକୁ ମଧ୍ୟ ବିକ୍ରୟ କରିବାକୁ ପଡ଼ିଥିଲା ଓ ମାମଲା ଶେଷ ହେବା ସମୟରେ ୫୦ ହଜାର ଟଙ୍କା କରଜ କରିବାକୁ ପଡ଼ିଥିଲା । ଉକ୍ତ ଘଟଣାରୁ ତାଙ୍କ ହୃଦୟ ଭିତରେ ପ୍ରଚ୍ଛନ୍ନ ଭାବରେ ଥିବା ଦେଶପ୍ରେମ ଭାବନାଟିକୁ ବାସ୍ତବରେ ରୂପାୟିତ କରିବା ଲାଗି ଏହା ତାଙ୍କର ପ୍ରଥମ ପଦକ୍ଷେପ ବୋଲି କୁହାଯାଏ ।

ଉକ୍ତ ମାମଲାଟି କୋର୍ଟରେ ଚାଲୁଥିବା ସମୟରେ ଶ୍ରୀ ଅରବିନ୍ଦଙ୍କ ସପକ୍ଷରେ ଜଣେ ଦକ୍ଷ ସଫଳ ବ୍ୟବହାରଜୀବୀ ବାରିଷ୍ଟର ଭାବରେ ତାଙ୍କ ସୁଆଲ ଓ ଜବାବ୍ ଯେପରି ଦୃଢ଼ ଯୁକ୍ତି ପୂର୍ଣ୍ଣ ଭାଷାରେ ସେ ଶେଷ

କରିଥିଲେ, ତାହା ସ୍ୱାଧୀନତା ଏବଂ ମାନବିକତା ଭାବନାକୁ ସମ୍ମାନ ଦେଉଥିବା ପ୍ରତ୍ୟେକ ବ୍ୟକ୍ତିର ପ୍ରାଣକୁ ସ୍ପର୍ଶ କରୁଥିବ । ଆଇନ୍ ଶାସ୍ତ୍ରରେ ନିଜର ଗଭୀର ଦକ୍ଷତା ଓ ପାଣ୍ଡିତ୍ୟ ବଳରେ ହିଁ ଚିତ୍ତରଞ୍ଜନ ହାଇକୋର୍ଟରେ କାରଣମାନ ଦର୍ଶାଇ ଏହି ମକଦ୍ଦମା ଲଢ଼ିଥିଲେ । ସେହିଦିନଠାରୁ ଜଣେ ସଫଳ ଦେଶପ୍ରେମୀ ଉକିଲ ଭାବରେ ତାଙ୍କର ଖ୍ୟାତି ଚତୁର୍ଦ୍ଦିଗରେ ବ୍ୟାପିଗଲା । ଭାରତବର୍ଷର ସେ ଜଣେ ଶ୍ରେଷ୍ଠ ଆଇନଜ୍ଞ ରୂପରେ ଯଶ ଲାଭ କଲେ । ଜେଲ୍‌ରୁ ମୁକ୍ତି ଲାଭ କଲାପରେ ବିପ୍ଳବୀ ଅରବିନ୍ଦ ଚିତ୍ତରଞ୍ଜନଙ୍କୁ ଆନନ୍ଦରେ କୁଣ୍ଢାଇ ପକାଇ କହିଥିଲେ—"ଯେଉଁ ଲୋକ ଧନରତ୍ନ ସମସ୍ତ ତଥା ଘୁଞ୍ଚି ମୋ ପାଇଁ ନିଜର ବହୁମୂଲ୍ୟ ସମୟ ଦେଇ ମୋତେ ରକ୍ଷା କରିଛନ୍ତି, ଆଜି ତାଙ୍କୁ ମୁଁ ସ୍ୱଚକ୍ଷୁରେ ଦେଖି ନିଜକୁ ଭୁଲିଗଲି ।"

ଏଟରି ମନ୍ତବ୍ୟର ତାତ୍ପର୍ଯ୍ୟ ଅରବିନ୍ଦଙ୍କ ଦୃଷ୍ଟିରେ ଅତି ମହାନ । ଜାତୀୟ ମୁକ୍ତି ଆନ୍ଦୋଳନ ସଙ୍କେତରେ ଚିତ୍ତରଞ୍ଜନଙ୍କ ପରି ନୀରବ ସାଧକ ତ୍ୟାଗୀ ବାସ୍ତବିକ୍ ବିରଳ ।

କ୍ରମେ ରାଜନୈତିକ ମୋକଦ୍ଦମାରେ ଜଣେ ଶ୍ରେଷ୍ଠ ଆଇନଜ୍ଞ ଭାବରେ ତାଙ୍କର ଦକ୍ଷତା ଅତିମାତ୍ରାରେ ପ୍ରସାର ଲାଭ କରିଥିଲା, ୧୯୧୦ ମସିହାରେ ଘଟିଥିବା 'ଢାକା ଷଡ଼ଯନ୍ତ୍ର' ନାମକ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ମାମଲାଟିରେ ମଧ୍ୟ ଚିତ୍ତରଞ୍ଜନ ଅନୁଶୀଳନ ଦଳର ନେତା ପୁଲିନ ବିହାରୀ ଦାସ ଓ ଅନ୍ୟମାନଙ୍କ ପକ୍ଷରୁ ଲଢ଼ିଥିଲେ । ଏହାପରେ ଚିତ୍ତରଞ୍ଜନ 'ଦିଲ୍ଲୀ ଷଡ଼ଯନ୍ତ୍ର' ମାମଲାର ଦାୟିତ୍ୱ ହାତକୁ ନେଲେ । ଏହା ଏପରି ଏକ ରାଜନୈତିକ ମକଦ୍ଦମା ଯାହା ସାରା ଭାରତୀୟ ଲୋକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ବିପ୍ଳବୀ ନେତା-ମାନଙ୍କ ବିରୁଦ୍ଧରେ ବ୍ରିଟିଶ ସରକାରଙ୍କ ପତନ ଘଟାଇବା ପାଇଁ

ଷଡ଼ଯନ୍ତ୍ର କରୁଥିବା ଓ ବଡ଼ଲାଟ୍ ଲର୍ଡ ହାର୍ଡିଞ୍ଜଙ୍କ ( Lord Hardinja)ଙ୍କ ଜୀବନ ଉପରେ ଆକ୍ରମଣ କରାଯାଇଥିବା ଅଭିଯୋଗର ଉଲ୍ଲେଖ ଥିଲା । ଚିତ୍ତରଞ୍ଜନଙ୍କୁ ଏହି ମାମଲା କଚେରୀରେ ଲଢିବା ପାଇଁ ପ୍ରସ୍ତାବ ମିଳିବା ମାତ୍ରେ ସେ ନିଜର ଅସୁସ୍ଥ ପ୍ରତି ଭ୍ରୂକ୍ଷେପ ନ କରି ଦିଲ୍ଲୀ ଯାଇଥିଲେ । ସେଠାରେ ସେ ଯୁକ୍ତି କାଢିଥିଲେ,ଯେ ଅଭିଯୁକ୍ତ ଆସାମୀମାନଙ୍କ ସପକ୍ଷରେ ମକଦ୍ଦମା ନିମନ୍ତେ ସରକାରଙ୍କ ନିକଟରେ ଆବଶ୍ୟକୀୟ ପ୍ରମାଣ ତଥା ଆଇନଗତ ବୈଧତା ନାହିଁ ।

ତାଙ୍କର ଏପରି ଯୁକ୍ତି ଶୁଣି ବ୍ରିଟିଶ୍ ସରକାରଙ୍କ ପକ୍ଷରୁ ଓକିଲ ସାର୍ ଜନ୍ ଏହାର ଘୋର ପ୍ରତିବାଦ କରି ଏହା ମିଥ୍ୟା ଉଦ୍ଦେଶ୍ୟମୂଳକ ବୋଲି କହିବାରୁ ଚିତ୍ତରଞ୍ଜନ ଏପରି କଠୋର ଭାଷାରେ ଏହାର ପ୍ରତିବାଦ କରିଥିଲେ ଯେ, ବିଚାରପତି ଆଶ୍ଚର୍ଯ୍ୟ ହୋଇ ଚିତ୍ତରଞ୍ଜନ ଓ ଶ୍ରୀ ଜନ୍ ଉଭୟଙ୍କୁ କ୍ଷମା ମାଗିବାକୁ ନିର୍ଦ୍ଦେଶ ଦେଲେ । ମାତ୍ର ଚିତ୍ତରଞ୍ଜନ କୌଣସି କ୍ଷମା ପ୍ରାର୍ଥନା କରିବେ ନାହିଁ ବୋଲି ସେକ୍ ଠୋକ୍ ଭାବରେ ଘୋଷଣା କଲେ, ଓ ଶେଷରେ ତାଙ୍କର ସିଦ୍ଧାନ୍ତ ହିଁ ସତ୍ୟ ହେଲା ସେହିଦିନଠାରୁ ସରକାରୀ ତଥା ଆସାମୀମାନଙ୍କ ନିମନ୍ତେ ଲଢ଼ୁଥିବା ଓକିଲମାନଙ୍କ ପ୍ରତି ବିଚାରପତି ସମାନ ବ୍ୟବହାର ଦେଖାଇଲେ । ସ୍ଥାନୀୟ ଓକିଲମାନେ ଏହି ଘଟଣାରେ ଅତ୍ୟନ୍ତ ଆନନ୍ଦିତ ଓ ଉତ୍ସାହିତ ହୋଇଥିଲେ । ଚିତ୍ତରଞ୍ଜନଙ୍କ ଓକିଲାତି ଜୀବନକାଳ ମଧ୍ୟରେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ମକଦ୍ଦମାରେ ସେ ପାଞ୍ଚଜଣ ଯୁବକଙ୍କ ଜୀବନରକ୍ଷା କରିଥିଲେ ।

୧୯୧୮ ମସିହାରେ କଲିକତାସ୍ଥିତ ଆଲିପୁର ନାମକ ସ୍ଥାନରେ ଘଟିଥିବା (ଟ୍ରଙ୍କ ମର୍ଡର କେସ୍)ରେ ବ୍ରିଟିଶ୍ ସରକାର

ପାଞ୍ଚଜଣ ଯୁବ ବିପ୍ଳବୀ ନେତାମାନଙ୍କୁ ନିଜର ଜଣେ ସହକର୍ମୀଙ୍କୁ ହତ୍ୟା କରିଥିବା ଅଭିଯୋଗରେ ଅଭିଯୁକ୍ତ କରିଥିଲେ ।

ସରକାର ଆହୁରି ମଧ୍ୟ ଅଭିଯୋଗ କରିଥିଲେ ଯେ ଉକ୍ତ ପାଞ୍ଚଜଣ ଯୁବକ ନିଜ ସହକର୍ମୀଙ୍କୁ ପୋଲିସ ନିକଟରେ ଗୁପ୍ତ ସମ୍ବାଦ ଯୋଗାଉଥିବାର ସନ୍ଦେହରେ ତାଙ୍କୁ ହତ୍ୟା କରି ଏକ ଟ୍ରଙ୍କ୍ ରେ ଭର୍ତ୍ତି କରି ଫେଲିବାଇ ପାର୍ଶଲ୍ ଦ୍ୱାରା ପଠାଇଥିଲେ, ଉକ୍ତ କେସଟିର ପୂର୍ଣ୍ଣ ୨୮ ଦିନ କାଳ ବିଚାର ଚାଲିଥିଲା ଏବଂ ଶେଷରେ ଚିତ୍ତରଞ୍ଜନ ବହୁଶ୍ରମ କରି ପାଞ୍ଚଜଣ ଯୁବକମାନଙ୍କୁ ନିର୍ଦ୍ଦୋଷ ବୋଲି ପ୍ରମାଣିତ କରି ଖଲାସ୍ କରି ଦେଇଥିଲେ । ବଙ୍ଗଳାର ତତ୍କାଳୀନ ଆଡ୍ଭୋକେଟ୍ ଜେନେରାଲ ଏହି କାରଣରୁ ତାଙ୍କୁ ଘୋର ଅଭିନନ୍ଦନ ଜଣାଇଥିଲେ ।

୧୯୧୮ ମସିହାରେ ବଙ୍ଗଳାର 'ଅମୃତବଜାର ପତ୍ରିକା' ନାମକ ଏକ ବିଶିଷ୍ଟ ପତ୍ରିକା ସମ୍ବନ୍ଧୀୟ ଅବମାନନା ମକଦ୍ଦମାଟି ପାଞ୍ଚ ଦିନ ଧରି ବହୁ ବାଦାନୁବାଦ ମଧ୍ୟରେ ସମାଧାନ ହୋଇ ପାରୁ-ନଥିଲା, ଶେଷକୁ ଚିତ୍ତରଞ୍ଜନ ଉକ୍ତ ମାମଲାଟିର ଦାୟିତ୍ୱ ହାତକୁ ନେଇ ସମ୍ପୂର୍ଣ୍ଣ ଭିନ୍ନ ନୂତନ ଦୃଷ୍ଟିକୋଣରୁ ଯୁକ୍ତି କରି ଏପରି ଭାବରେ ଲଢିଲେ ଯାହାଫଳରେ ବିଚାରପତିମାନେ ଶେଷକୁ ତାଙ୍କ ମତାମତକୁ ଗ୍ରହଣ କରି ପତ୍ରିକା ସପକ୍ଷରେ ରାୟ ଦେଇଥିଲେ । ଏହିପରି ଭାବରେ ଚିତ୍ତରଞ୍ଜନ ଜଣେ ବିଶିଷ୍ଟ ଆଇନଜ୍ଞ ରୂପରେ ସାରା ଦେଶରେ ବିପୁଳ ଖ୍ୟାତି ଅର୍ଜନ କରିଥିଲେ । ଜଣେ ସଫଳ ଦକ୍ଷ, ସାହସୀ ଓ ନିଷ୍ଠାପର ଆଇନଜୀବୀ ରୂପରେ ଭାରତୀୟ ଆଇନ୍ ଇତିହାସରେ ସେ ଚିରଦିନ ଅମର ହୋଇ ରହିବେ । ଯେ କୌଣସି ମାମଲାଟିଏ ହାତକୁ ନେବା ମାତ୍ରେ ସେ ଅତି ସାବଧାନତାର ସହ ସମସ୍ତ ବିଷୟଗୁଡ଼ିକୁ

ପତି, ବୁଦ୍ଧି, ବକ୍ତୃତା କରୁଥିଲେ ଏବଂ ଏହାହିଁ ତାଙ୍କ 'ସଫଳତାର ମୂଳ କଥା' ବୋଲି ସମସ୍ତେ ସ୍ୱୀକାର କରୁଥିଲେ । ବକ୍ତୃତା କ୍ଷେତ୍ରରେ ସେ ଏପରି ଆନ୍ତରିକତା ଓ ଦୃଢ଼ତାର ସହ ଯୁକ୍ତି ଦର୍ଶାଉଥିଲେ, ଯଦ୍ଦ୍ୱାରା ବହୁ ବକ୍ତୃତାପଟୁମାନେ ମୂଳରୁ ବିରୁଦ୍ଧ ମନୋଭାବ ଦେଖାଉଥିଲେ ମଧ୍ୟ ଶେଷରେ ତାଙ୍କଦ୍ୱାରା ପ୍ରଭାବିତ ହୋଇଯାଉଥିଲେ ।

ଛାତ୍ରାବସ୍ଥାରୁ ହିଁ ଚିତ୍ତରଞ୍ଜନ ରାଜନୀତିରେ ଆଗ୍ରହ ପ୍ରକାଶ କରିଥିଲେ । ତାଙ୍କର ରାଜନୈତିକ କାର୍ଯ୍ୟକଳାପ ଯୋଗୁଁ ତାଙ୍କୁ ଭାରତୀୟ ସିଭିଲ୍ ସର୍ଭିସ୍ ବୃତ୍ତିରେ ଗ୍ରହଣ କରାଯାଇନଥିଲା ବୋଲି ସେ ଏବଂ ତାଙ୍କ ବନ୍ଧୁମାନେ ଭାବୁଥିଲେ । ଓକିଲାତି ଜୀବନରେ ଯେଉଁ କେତେକ ରାଜନୈତିକ ମାମଲାରେ ଓକିଲ ଭାବରେ ସେ ଲିପ୍ତ ସଫଳତା ଲାଭ କରିଥିଲେ, ତନ୍ମଧ୍ୟରେ ରାଜନୀତି ହିଁ ମୁଖ୍ୟ ଅଂଶ ଗ୍ରହଣ କରିଥିଲା । ଚିତ୍ତରଞ୍ଜନ ଜଣେ କାବ୍ୟ ରସିକ ଥିଲେ, ସାହିତ୍ୟକଳା ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା । ତାଙ୍କର ସାହିତ୍ୟ ସାଧନା ମୁଖ୍ୟତଃ ଦେଶପ୍ରେମ ଉପରେ ଆଧାରିତ । ସେ ଯାହାକିଛି ରଚନା କରୁଥିଲେ ତନ୍ମଧ୍ୟରେ ଦେଶ ମାତୃକା ପ୍ରତି ଗଭୀର ଶ୍ରଦ୍ଧା, ନିଷ୍ଠା ଓ ଦେଶର ଅତୀତ ଗୌରବ ପ୍ରତି ପୂର୍ଣ୍ଣ ସମ୍ମାନ ଫୁଟି ଉଠୁଥିଲା । ଚିତ୍ତରଞ୍ଜନ ବୈଷ୍ଣବ କବିମାନଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ; କାରଣ ସେମାନଙ୍କ ସରଳତା ଓ ଆନ୍ତରିକତା ତାଙ୍କୁ ଅତି ମାତ୍ରାରେ ଅଭିଭୂତ କରିଥିଲା । ତାଙ୍କର ପ୍ରଥମ ମଦିତା ସଂକଳନ ପୁସ୍ତକ ''ମାଳଞ୍ଚ'', ତାହା କେତେକ କ୍ଷୁଦ୍ର କବିତାର ସମଷ୍ଟି, ସେହି କବିତା ଗୁଡ଼ିକରେ ସମାଜର ଦଳିତ ନିଷ୍ପେଷିତ ବ୍ୟକ୍ତିମାନଙ୍କ ପାଇଁ ତାଙ୍କର ଗଭୀର ସମବେଦନା ପ୍ରକାଶ ପାଇଛି । ତାଙ୍କର ଆଉ କେତେକ ପ୍ରସିଦ୍ଧ ପୁସ୍ତକ ମଧ୍ୟରୁ 'ମାଳା', 'ସାଗର

ସଙ୍ଗୀତ' 'ଅନ୍ତର୍ଯ୍ୟାମୀ' ପ୍ରଭୃତି ନାଟକ ସମାଦରରେ ବିଶେଷ ଆଦର ଲାଭ କରିଛି । ମାନଙ୍କ ପୁସ୍ତକଟି ଚିତ୍ତରଞ୍ଜନଙ୍କୁ କବି ରୂପରେ ପ୍ରତିଷ୍ଠିତ କରିଥିଲା । ତାଙ୍କର ପ୍ରାପ୍ତ ସମସ୍ତ କବିତା ଗୁଡ଼ିକରେ ଭକ୍ତିଭାବ ଓ ଆତ୍ମ ଚେତନତାର ସମ୍ମିଶ୍ରଣ ଲକ୍ଷିତ ହୁଏ । ୧୯୦୫ ମସିହାରେ ସେ ତତ୍କାଳୀନ ବଙ୍ଗଳାର ବିଖ୍ୟାତ ପତ୍ରିକା 'ନାରାୟଣୀ' ପ୍ରକାଶ କରିଥିଲେ, ଓ ନିଜେ ଏହାର ସମ୍ପାଦକ ଥିଲେ । ଏହିପରି ଭାବରେ ନିଜର ବୁଦ୍ଧି ଓ ଜ୍ଞାନକୁ ଜଣେ ସଫଳ ଓକିଲ ରୂପରେ ବିକଶିତ କରି ଓ ନିଜର ଭାବନା ଅନୁଭୂତିକୁ କାବ୍ୟ ମାଧ୍ୟମରେ ପ୍ରକାଶ କରି ସାହିତ୍ୟିକ ଭାବରେ ମଧ୍ୟ ନିଜକୁ ସମାଜରେ ପ୍ରତିଷ୍ଠିତ କରିଥିଲେ । ଏଥିରୁ ଜଣାପଡ଼େ ଯେ, ସେ ପ୍ରଥମେ ଜାତୀୟତାବାଦୀ ଥିଲେ, ପରେ ଆଇନଜ୍ଞ ଓ ସାହିତ୍ୟିକ ହୋଇ ଉଭୟ କ୍ଷେତ୍ରରେ ସୁପରିଚିତ ହେବା ପରେହିଁ ରାଜନୀତି କ୍ଷେତ୍ରରେ ପ୍ରବେଶ କରିଥିଲେ । ତାଙ୍କର ବକ୍ତୃତା ଦେବା ଓ ଅନ୍ୟକୁ ବୁଝାଇବା ଢଙ୍ଗରେ ଅସାଧାରଣ ଦକ୍ଷତା ଥିଲା । ଜଣେ ଦକ୍ଷ ଆଇନଜ୍ଞ ହୋଇଥିବାରୁ ସେ ଯେ କୌଣସି ବିଷୟକୁ ବିଭିନ୍ନ ଦୃଷ୍ଟିକୋଣରୁ ବାସ୍ତବତା ଦୃଷ୍ଟିରୁ ବିଶ୍ଳେଷଣ କରିପାରୁଥିଲେ । ପ୍ରଥମ ରାଜନୀତି କ୍ଷେତ୍ରରେ ପ୍ରବେଶ କରିବା ଦିନଠାରୁହିଁ ସେ ମୁଷ୍ଟିମେୟ କ୍ଷମତାଶାଳୀ ଲୋକମାନଙ୍କ ସୁବିଧା ସୁଯୋଗ ନିମନ୍ତେ କେବଳ ହେଲେ ଆନ୍ଦୋଳନ ନ କରି ସାଧାରଣ ଜନତାର ସ୍ୱରାଜ ଲାଭ ପାଇଁ ସଂଗ୍ରାମ କରି ଆସୁଥିଲେ । ଦେଶ ତାଙ୍କର ଏହି ମହାନ୍ ଗୁଣଟିକୁ ଅନୁଭବ କରି ତାଙ୍କୁ 'ଦେଶବନ୍ଧୁ' ଉପାଧିରେ ଭୂଷିତ କରିଥିଲେ । ତେଣୁ ସେ ପ୍ରକୃତରେ ଦେଶର ଅଗଣିତ ଦୁଃଖି ଅସହାୟ, ଦରିଦ୍ର ଜନତାଙ୍କ ବନ୍ଧୁ ଥିଲେ ।

୧୮୮୫ ମସିହାରେ ବମ୍ବେଠାରେ ହୋଇଥିବା ଭାରତର 'ଜାତୀୟ କଂଗ୍ରେସ' ବୈଠକଠାରୁହିଁ ଆଧୁନିକ ଭାରତରେ ରାଜନୀତି

ଚନ୍ଦ୍ରଲାଭ କରିଥିଲା । ସେହି ସମୟରେ ଉକ୍ତ ବୈଠକରେ ବ୍ରିଟିଶ୍ ସରକାରଙ୍କ ନିକଟରେ ଆବେଦନ, ନିବେଦନ କରି ପ୍ରତିକାର ଦାବୀ କରିବାହିଁ କଂଗ୍ରେସର ମୂଳ ଲକ୍ଷ୍ୟ ଥିଲା ।

୧୯୦୫ ମସିହାରେ କଂଗ୍ରେସ ମଧ୍ୟରେ ନୂତନ ଚିନ୍ତାଧାରାର ଆବିର୍ଭାବ ହୋଇଥିଲା । ସେହି ସମୟରେ ଯୁବକ ବିପିନ ଚନ୍ଦ୍ର ପାଲ କଂଗ୍ରେସ ରାଜନୀତିରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ତାଙ୍କଦ୍ୱାରା ପ୍ରକାଶିତ 'ନିଉ ଇଣ୍ଡିଆ' ନାମକ ପତ୍ରିକାଟିରେ ନୂତନ ନୂତନ ଜାତୀୟ ଚିନ୍ତାଧାରା ସମ୍ବନ୍ଧୀୟ ବିଷୟ ଗୁଡ଼ିକ ପ୍ରକାଶ ପାଉଥିଲା । ଚିତ୍ତରଞ୍ଜନ ବିପିନ୍ ଚନ୍ଦ୍ରଙ୍କ ଘନିଷ୍ଠ ସହଯୋଗୀ ହୋଇଥିବାରୁ ଭାରତର ଜାତୀୟ କଂଗ୍ରେସକୁ ନିୟନ୍ତ୍ରଣ କରୁଥିବା ମଧ୍ୟମ ଦଳର ଲୋକମାନଙ୍କୁ ଦୁହେଁ ପତ୍ରିକା ମାଧ୍ୟମରେ ସମାଲୋଚନା କରୁଥିଲେ । ସେ ସମୟର ଅବସ୍ଥା ସମ୍ପର୍କରେ ବୁଝାଇବାକୁ ଯାଇ ବିପିନ୍ ଚନ୍ଦ୍ର ପାଲ କହିଥିଲେ—"ବର୍ତ୍ତମାନ ଆଉ ଏକ ଆନ୍ଦୋଳନ ଆମ ରାଜନୀତିରେ ମୁଣ୍ଡ ଟେକି ଉଠିବାକୁ ଆରମ୍ଭ କରୁଛି । ୧୯୦୫ରେ ନୂତନ ଜାତୀୟତାବାଦ ଆନ୍ଦୋଳନ ଆରମ୍ଭ ହେବା ପରେ ପ୍ରାୟ ୨୦ ବର୍ଷ କାଳ ମୁଁ ଓ ଚିତ୍ତରଞ୍ଜନ ମାତୃଭୂମି ସେବାରେ ସହକର୍ମୀ ହେଲୁ । ମୋର ଏହି କାର୍ଯ୍ୟ ପାଇଁ ଆବଶ୍ୟକୀୟ ସମସ୍ତ ଅର୍ଥ ଯୋଗାଇବା ଚିତ୍ତରଞ୍ଜନ ତାଙ୍କର କର୍ତ୍ତବ୍ୟ ବୋଲି ମନେ କରିଥିବାରୁ ତାଙ୍କ ସାହାଯ୍ୟ ନେବା ସମ୍ଭବପର ହେଲା ।" ୧୯୦୬ ମସିହାରେ ଚିତ୍ତରଞ୍ଜନଙ୍କ ଘରେ 'ସ୍ୱଦେଶ ମଣ୍ଡଳ' ଗଠିତ ହେଲା । କେତେକ ନିକଟତମ ବନ୍ଧୁଙ୍କୁ ନେଇ ସେ ଏହାକୁ ଗଠନ କରିଥିଲେ । ଏହି ଆନ୍ଦୋଳନର ମୂଳ ଲକ୍ଷ୍ୟ ଥିଲା ସ୍ୱଦେଶୀ ପ୍ରଚାର ଓ ଅନ୍ୟର ସାହାଯ୍ୟ ବିନା ନିଜେ ଆତ୍ମ ନିର୍ଭରଶୀଳ ହେବା । ସେହି ସମୟରେ

ଅକ୍ଟୋବର ୧୬ ତାରିଖରେ ଦାର୍ଜିଲିଙ୍ଗଠାରେ ଏକ ସଭାରେ ଚିତ୍ତରଞ୍ଜନ ଭାଷଣ ପ୍ରସଙ୍ଗରେ କହିଥିଲେ—"ନିଜେ ନିଜକୁ ସାହାଯ୍ୟ କରିବା ଢଙ୍ଗରେ ଏହି ଆନ୍ଦୋଳନ ବଙ୍ଗାଳୀ ଜାତିକୁ ଏକ ମୌଳିକ ଶିକ୍ଷା ଦେଇଥିବା ଦୃଷ୍ଟିରୁ ଏହାର ଆବଶ୍ୟକତା ଅଛି ବୋଲି ମୁଁ ମନେ କରେ; ଏବଂ ସେହି କାରଣରୁ ଆମର ଜାତୀୟ ପ୍ରଗତି ଏହି ଆନ୍ଦୋଳନର ସଫଳତା ଉପରେ ନିର୍ଭର କରେ ବୋଲି ମୋର ଦୃଢ଼ ବିଶ୍ୱାସ । ପ୍ରତ୍ୟେକ ବ୍ୟକ୍ତିକୁ ତା'ର ସର୍ବାଙ୍ଗୀନ ବିକାଶ ପାଇଁ ଯେପରି ପରିଶ୍ରମ କରିବାକୁ ପଡ଼ିବ, ସେହିପରି ପ୍ରତ୍ୟେକ ଜାତିକୁ ନିଜର ଉନ୍ନତି ଓ ରକ୍ଷା ନିମନ୍ତେ କଠିନ ପରିଶ୍ରମ କରିବାକୁ ହେବ, ସ୍ୱାଧୀନତା ଲାଭ କରିବା କେବଳ ନିଜ ଶକ୍ତି ଉପରେ ନିର୍ଭର କରେ ।

ସେହି ସଭାରେ ସେ ତାଙ୍କର 'ଜାତୀୟତାବାଦ' ବିଷୟଟି ସମଗ୍ର ଭାରତବର୍ଷକୁ ଲକ୍ଷ୍ୟ କରି କହିଥିଲେ । ଆହୁରି ମଧ୍ୟ ସେ ସମୟରେ ଚିତ୍ତରଞ୍ଜନ 'ଏସିଆ ସ୍ତୁହଙ୍ଗ' ଗଠନ ପାଇଁ ମଧ୍ୟ ଚେଷ୍ଟା କରୁଥିଲେ । ଚିତ୍ତରଞ୍ଜନ ଓ ତାଙ୍କର କେତେକ ଘନିଷ୍ଠ ବନ୍ଧୁଗଣ ଜାତୀୟ ଶିକ୍ଷା-ନୀତିର ଆବଶ୍ୟକତା ଅନୁଭବ କରିଥିଲେ । ସେଥିପାଇଁ ଗୋଟିଏ ଜାତୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଯୋଜନା କଲେ ଓ କଲି-କତାର କୁଳୀନ ଜଣେ ଶ୍ରେଷ୍ଠ ଧନିକ ସୁବୋଧ ମଲ୍ଲିକଙ୍କ ଠାରୁ ଲକ୍ଷେ ଟଙ୍କା ଦାନ ସୂତ୍ରରେ ଲାଭ କରିଥିଲେ ।

୧୯୦୬ ମସିହା ନଭେମ୍ବର ମାସରେ ଏହି ଯୋଜନା ଘୋଷିତ ହେଲା । ଆଜି ଭାରତରେ ପ୍ରସିଦ୍ଧ କଲିକତାସ୍ଥିତ 'ଯାଦବପୁର ଇଞ୍ଜିନିୟରିଂ କଲେଜ' ନାମରେ ନାମିତ ହୋଇଥିବା ଜାତୀୟ ଶିକ୍ଷା ଅନୁଷ୍ଠାନ ସେଠାରେହିଁ ପ୍ରଥମେ ସ୍ଥାପିତ ହୋଇଥିଲା । ସେ ସମୟରେ

ଚିତ୍ତରଞ୍ଜନ ଅରବିନ୍ଦଙ୍କୁ ଜାତୀୟ ଶିକ୍ଷା ପରିଷଦର ଅଧ୍ୟକ୍ଷ ପଦରେ ରହିବାକୁ ଅନୁରୋଧ କରିଥିଲେ, ଓ ଅରବିନ୍ଦ ମଧ୍ୟ ସେଥିରେ ସମ୍ମତ ହୋଇଥିଲେ । ଏହିପରି ଭାବରେ ଚିତ୍ତରଞ୍ଜନ ପ୍ରାଥମିକ ସ୍ତରରେ ଶିକ୍ଷା ପଦ୍ଧତିର ସଂସ୍କାର ଆଣି ଜାତୀୟ ଆନ୍ଦୋଳନର ଗୌରବକୁ ବଢ଼ାଇଥିଲେ ।

୧୯୦୬ ମସିହାରେ କଲିକତା ଠାରେ ହୋଇଥିବା କଂଗ୍ରେସ ଅଧିବେଶନରେ ଲୋକମାନ୍ୟ ତିଲକ ଏବଂ ମହାରାଷ୍ଟ୍ରର ଅନ୍ୟ ପ୍ରମୁଖ ନେତାଗଣ ଚିତ୍ତରଞ୍ଜନଙ୍କ ଅତିଥି ରୂପରେ ଉପସ୍ଥିତ ହୋଇ ଜାତୀୟତାବାଦୀ ଦଳକୁ ଅଧିକ ଉତ୍ସାହିତ କରିଥିଲେ ।

୧୯୦୭ ମସିହାରେ କଂଗ୍ରେସର ସୁରଟ୍‌ଠାରେ ଅଧିବେଶନ ସଂଗଠିତ ହେବା ପରେ ଏହାର ନେତୃତ୍ୱ ଦଳର ନରମ ପନ୍ଥୀମାନେ ଗ୍ରହଣ କରିଥିଲେ । ଫଳରେ କଂଗ୍ରେସ ଭିତରେ ପ୍ରଚଣ୍ଡ ବିଭେଦ ସୃଷ୍ଟି ହେଲା । ଚିତ୍ତରଞ୍ଜନ ଏହି ସମୟରେ ସକ୍ରିୟ ରାଜନୀତିରୁ ଦୂରରେ ରହିଥିଲେ, ମାତ୍ର ସେ ସମୟର ରାଜନୈତିକ ମକଦ୍ଦମାଗୁଡ଼ିକରେ ସେ ଓକିଲ ରୂପରେ ଲଢ଼ୁଥିଲେ ଓ ରାଜନୀତି ସହିତ ସମ୍ପର୍କ ରଖୁଥିଲେ ।

୧୯୧୭ ମସିହାରେ କଲିକତାଠାରେ ହୋଇଥିବା ବଙ୍ଗପ୍ରାଦେଶିକ ସମ୍ମିଳନୀରେ ସଭାପତିତ୍ୱ କରିବାପାଇଁ ତାଙ୍କୁ ନିମନ୍ତ୍ରଣ କରାଯାଇଥିଲା । ସଭାପତିରୂପେ ସେ ଏହି ସମ୍ମିଳନୀରେ ଅତି ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ଘୋଷଣା କରିଥିଲେ । ତାଙ୍କର ବକ୍ତବ୍ୟ ଥିଲା—'ଆଜି, ରାଜନୈତିକ ଆନ୍ଦୋଳନ କେବଳ ଫାଙ୍କା ଆବାଜରେ ପରିଣତ ହୋଇଛି, ଦେଶ କେବଳ ଶିକ୍ଷିତ ସମାଜକୁ ନେଇ ଗଠିତ ନୁହେଁ । ପରନ୍ତୁ ଉଚ୍ଚ, ନୀଚ,

ମଧ୍ୟମ ସବୁ ଶ୍ରେଣୀର ସବୁ ଧର୍ମ ଓ ସମ୍ପ୍ରଦାୟର ଲୋକଙ୍କୁ ନେଇ ଏହା ସୃଷ୍ଟ'।

ସେତେବେଳେ ପ୍ରାପ୍ତ ଯେଉଁ ଧରଣର ସମ୍ମାନ ହେଉଥିଲା ସେଥିରେ ସାଧାରଣ ଜନତା ଓ କୃଷୀକୁଳ ଭାଗ ନେଇ ପାରୁ ନ ଥିଲେ, ଚିତ୍ତରଞ୍ଜନ ଏହି ଘଟଣାର ଘୋର ବିରୋଧ କରି କହୁଥିଲେ । ଏହି ମତ ସର୍ବସମ୍ମତ ଗଣତାନ୍ତ୍ରିକ ମତ ଉପରେ ପ୍ରତିଷ୍ଠିତ ନୁହେଁ, ଆମର ରାଜନୈତିକ ଆନ୍ଦୋଳନ ଦେଶର ପ୍ରକୃତ ମେରୁଦଣ୍ଡ କୃଷକଙ୍କଠାରୁ ସମ୍ପୂର୍ଣ୍ଣ ଅଲଗା ହୋଇ ରହୁଥିବାରୁ ଏହି ଆନ୍ଦୋଳନ ଏକ ନିଷ୍ଫଳ ଆନ୍ଦୋଳନ, ସେହି ପ୍ରସଙ୍ଗରେ ସେ ଆହୁରି ଚେତାଇଦେଇ କହୁଥିଲେ —ବ୍ରିଟିଶ୍ ଶାସନ ଆମ ଦେଶରେ ବହୁବର୍ଷ ଧରି ଚାଲିବା ଫଳରେ ଆମେ ସରଳତା, ସାହସିକତା ରୂପକ ନିଜର ପାରିବାରିକ ଜୀବନଶୈଳୀକୁ ଛାଡ଼ି ବିଦେଶୀ ଅସତ୍ ଅଭ୍ୟାସର ଅଧୀନ ହୋଇ ବିଳାସିତାରେ ମାତିଉଠୁଛୁ, ଏହା ଆମ ପାଇଁ ଏକ ସର୍ବନାଶର ପନ୍ଥା । ଚିତ୍ତରଞ୍ଜନଙ୍କ ଏପରି ଘୋଷଣାର ଆଭିମୁଖ୍ୟ ଆତ୍ମବିଶ୍ୱାସ, ସେ ପାଶ୍ଚାତ୍ୟ ରାଜନୀତିର ବିରୋଧୀ ନ ଥିଲେ ହେଁ ଭାବୁଥିଲେ ଯେ ଯଦି ଭାରତ ସମାନ ଭାବରେ ପାଶ୍ଚାତ୍ୟ ଶୈଳୀର ସମ୍ମୁଖୀନ ନ ହୁଏ, ତେବେ ଉଭୟ ଦେଶ ମଧ୍ୟରେ ସ୍ଥାୟୀ ବନ୍ଧୁତା ଅସମ୍ଭବ । ଅନ୍ଧ ଭାବରେ ପାଶ୍ଚାତ୍ୟ ରୀତିନୀତି, ପୋଷାକ ପରିଚ୍ଛଦ, ଖାଦ୍ୟ ପାନୀୟ, ଆଚରଣ ଆଦି ଅନୁସରଣ କରିବା ବିଷୟରେ ସେ ଘୋର ବିରୋଧୀ ଥିଲେ । କଂଗ୍ରେସ ସଙ୍ଗଠନର ଆଭ୍ୟନ୍ତରୀଣ ବିଷୟରେ ଗଣତାନ୍ତ୍ରିକ ମତକୁ ଅକ୍ଷୁର୍ଣ୍ଣ ରଖିବା ଉପରେ ସେ ଗୁରୁତ୍ୱ ଦେଉଥିଲେ । ୧୯୧୭ ମସିହାରେ କଲିକତାଠାରେ କଂଗ୍ରେସ ଅଧିବେଶନ ଅନୁଷ୍ଠାନରେ 'ହୋମ୍ ରୁଲ୍ ଲିଗ୍' କଂଗ୍ରେସ ଅନୁଷ୍ଠାନକୁ ନିମନ୍ତ୍ରିତ କରିଥିଲା ଓ

ତା'ର ପ୍ରଧାନ ସହକାରୀ ଭାବରେ ସେତେବେଳେ ଚିତ୍ତରଞ୍ଜନ ଭାରତର ଜାତୀୟ ଏବଂ ରାଜନୈତିକ ଜୀବନରେ, ମୁଖ୍ୟ ସ୍ଥାନ ଅଧିକାର କରିଥିଲେ ।

୧୯୧୯ ମସିହାରେ ଭାରତୀୟ ରାଜନୀତିରେ ଏପରି କେତେକ ଘଟଣା ଘଟିଲା ଯାହା ଫଳରେ ଭାରତୀୟ ରାଜନୈତିକ ଇତିହାସର ଗତି ସମ୍ପୂର୍ଣ୍ଣ ରୂପେ ବଦଳିଗଲା, ସେଥିମଧ୍ୟରୁ ପ୍ରଥମ ଉଲ୍ଲେଖନୀୟ ଘଟଣାଟି ୧୯୧୯ ମସିହା ମାର୍ଚ୍ଚ ମାସରେ ପାଶ୍ ହୋଇଥିବା 'ରାଓଲଟ ଆଇନ୍' । ଏହି ଆଇନ ବଳରେ ଭାରତ ସରକାରଙ୍କୁ ସମସ୍ତପ୍ରକାର ରାଜନୈତିକ ଆନ୍ଦୋଳନ ଏବଂ ସରକାର ବିରୋଧୀ କାର୍ଯ୍ୟଗୁଡ଼ିକ ଦବାଇ ଦେବାପାଇଁ ପ୍ରଚୁର କ୍ଷମତା ଦିଆଗଲା, ଏପରିକି ବିନା ବିଚାରରେ ଲୋକଙ୍କୁ ଗିରଫ କରି ଅଟକ ରଖିବା କ୍ଷମତା ମଧ୍ୟ ସରକାରଙ୍କୁ ଦିଆଗଲା । ଦେଶସାରା ଏହି ଆଇନ ବିରୁଦ୍ଧରେ ପ୍ରବଳ ଜନମତ ପ୍ରକାଶ ପାଇଲା । ମହାତ୍ମାଗାନ୍ଧୀ ଏହି ବିଲ୍ ବିରୁଦ୍ଧରେ ଆନ୍ଦୋଳନର ନେତୃତ୍ୱ ନେଲେ ଓ ଦେଶସାରା ହରତାଳ୍ କରାଯିବ ବୋଲି ଘୋଷଣା କଲେ । ଏହି ଆହ୍ୱାନର ରାଜନୈତିକ ଦିଗ ପ୍ରତି କେବଳ ଆକୃଷ୍ଟ ନ ହୋଇ ଦେଶବନ୍ଧୁ ଚିତ୍ତରଞ୍ଜନ ମହାତ୍ମାଗାନ୍ଧୀଙ୍କୁ ଆଧ୍ୟାତ୍ମିକ ଶକ୍ତିର ପ୍ରତିବିମ୍ବ ରୂପରେ ଦେଖିଲେ । କଲିକତାଠାରେ ହୋଇଥିବା ବିରାଟ ସଭାରେ ଚିତ୍ତରଞ୍ଜନ ବକ୍ତୃତା ଦେଇ କହିଲେ— 'ସତ୍ୟାଗ୍ରହ ହେଉଛି ଆଧ୍ୟାତ୍ମିକ ଓ ପ୍ରେମର ଶକ୍ତି । 'ରାଓଲଟ୍ ଆଇନ' ସ୍ୱାଧୀନତା ଆନ୍ଦୋଳନ ମାର୍ଗର ଏକ ତୀକ୍ଷ୍ଣ କଣ୍ଟକ, ଏହାକୁ ଦୂର କରି ନ ପାରିଲେ ଆମେ କଦାପି ସ୍ୱାଧୀନତା ଲାଭ କରି ପାରିବୁ ନାହିଁ । ସେଥିପାଇଁ ନିଜର ସ୍ୱାର୍ଥପରତା, ଅନ୍ୟ ପ୍ରତି ଘୃଣା ଓ ହିଂସ୍ରତା ତ୍ୟାଗ କରି ଆତ୍ମ ସଂଯମ ରକ୍ଷା କରିବାକୁ ହେବ । ହେ

ମୋର ପ୍ରିୟ ଭାଇମାନେ ଆପଣମାନେ ପ୍ରସ୍ତୁତ ହୋଇ ରୁହନ୍ତୁ । ଦୁର୍ବଳ ଲୋକ କେବେହେଲେ ଲକ୍ଷ୍ୟ ହାସଲ କରିପାରେ ନାହିଁ । ଏହି ଦଳର ଉଦ୍ଦେଶ୍ୟ ବ୍ୟକ୍ତିଗତ ସ୍ୱାଧୀନତାକୁ ସୃଷ୍ଟି କରିବା, ସେଥିପାଇଁ ଏହି ଆନ୍ଦୋଳନରେ ଯଥା ସମ୍ଭବ ଆମେ ସମସ୍ତେ ହିଂସା ଆଚରଣରୁ ଦୂରେଇ ରହି ନିଷ୍ଠାର ସହ ଏହାକୁ ସଫଳ କରିବା ।" ଏହିପରି ବଜ୍ର ଗମ୍ଭୀର ଘୋଷଣା ମାଧ୍ୟମରେ ଚିତ୍ତରଞ୍ଜନ ଏହି ଆନ୍ଦୋଳନରେ ଅଗ୍ରଣୀ ହୋଇଥିଲେ । ଏହାପରେ ପଞ୍ଜାବର ଜାଲିଓ୍ୱାନାବାଗ୍ ନାମକ ସ୍ଥାନରେ ଇଂରେଜ ସରକାରଙ୍କ ଅମାନୁଷିକ, ଆଚରଣ ଫଳରେ ଯେଉଁ ହଜାର ହଜାର ନିରୀହ ଜନତାଙ୍କୁ ନୃଶଂସ ଭାବରେ ହତ୍ୟା କରାଗଲା, ତା ଫଳରେ ସମଗ୍ର ପଞ୍ଜାବ ପ୍ରଦେଶରେ ସାମରିକ ଆଇନ ଜାରି ହେଲା ଓ ଇଂରେଜ ସରକାରଙ୍କ ପ୍ରତି ସାଧାରଣ ଭାରତୀୟଙ୍କ ମନରେ ତିକ୍ତତା ଭାବ ବଢ଼ିବାକୁ ଲାଗିଲା । ଏହି ନିର୍ମମ ଘଟଣାର ଅନୁସନ୍ଧାନ ପାଇଁ 'ନିଖିଳ ଭାରତ କଂଗ୍ରେସ କମିଟି' ପକ୍ଷରୁ ମହାତ୍ମା-ଗାନ୍ଧୀଙ୍କ ସଭାପତିତ୍ୱରେ ଗୋଟିଏ ସ୍ୱାଧୀନ ଅନୁସନ୍ଧାନ କମିଟି ନିଯୁକ୍ତ କରାଗଲା । ଚିତ୍ତରଞ୍ଜନ ଓ ପଣ୍ଡିତ ମୋତିଲାଲ୍ ନେହେରୁ ଏହି କମିଟିର ସଭ୍ୟ ରହିଲେ । ଚିତ୍ତରଞ୍ଜନଙ୍କୁ ନିଜ ହାତରୁ ଏଥି ନିମନ୍ତେ ପ୍ରାୟ ପଚିଶ ହଜାର ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିଥିଲା ଓ ସେଥିପାଇଁ ତାଙ୍କର ତିଳେହେଲେ କୁଣ୍ଠାବୋଧ ନ ଥିଲା । ନିଜର ସମସ୍ତ ସଞ୍ଚିତ ଅର୍ଥକୁ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଖର୍ଚ୍ଚ କରିବାରେ ସେ ଅପାର ଆନନ୍ଦ ଲାଭ କରୁଥିଲେ । ପଣ୍ଡିତ ଜବାହରଲାଲ୍ ନେହେରୁ ଚିତ୍ତରଞ୍ଜନଙ୍କ ବିଷୟରେ ନିଜର ମତ ଦେଇ କହିଥିଲେ—'ଚିତ୍ତରଞ୍ଜନ ଜଣେ ମହାନ୍ ବ୍ୟକ୍ତି, ନିଷ୍ଠାପର ଦେଶସେବକ, ତାଙ୍କ ସହିତ କାର୍ଯ୍ୟ କରିବା ଫଳରେ ମୋର ଯଥେଷ୍ଟ ଅଭିଜ୍ଞତା ବଢ଼ିଲା ଓ ତାଙ୍କ ପ୍ରତି ମୋର ଗଭୀର ସମ୍ମାନ ବଢ଼ିଲା ।'

୧୯୨୦ ମସିହାରେ ନାଗପୁର କଂଗ୍ରେସ ଅଧିବେଶନ ହୋଇଥିଲା, ମହାତ୍ମାଗାନ୍ଧୀ ଓ ଚିତ୍ତରଞ୍ଜନଙ୍କ ମଧ୍ୟରେ ଏହି ଅଧିବେଶନରେ କେତେକ ବିଷୟ ଉପରେ ଖୋଲା ଆଲୋଚନା ହେବା ପରେ ଅସହଯୋଗ ଆନ୍ଦୋଳନ ପାଇଁ ଦେଶକୁ ସବୁଦିଗରୁ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ହାତକୁ ନେଇ ତାହାକୁ କାର୍ଯ୍ୟକାରୀ କରିବା ଲାଗି ପ୍ରସ୍ତାବମାନ ରଖାଯାଇଥିଲା । ସେହି ସମୟରେ ଚିତ୍ତରଞ୍ଜନ ଓକିଲାତି ବ୍ୟବସାୟ ଛାଡ଼ି ସମ୍ପୂର୍ଣ୍ଣ ଭାବରେ ଦେଶ ସେବାରେ ନିଜକୁ ନିୟୋଜିତ କରିବା ପାଇଁ ଘୋଷଣା କରିବାରୁ ଦେଶବାସୀଙ୍କୁ ଏହା ବିଶେଷ ଭାବରେ ଉଦ୍‌ବୁଦ୍ଧ କରିଥିଲା । ତାଙ୍କ ଘରେ ସେହି ସମୟରେ ପ୍ରତିଦିନ ସାହିତ୍ୟ ଏବଂ କୀର୍ତ୍ତନ ଚର୍ଚ୍ଚା ହେଉଥାଏ । ସେ ସବୁ କିନ୍ତୁ ତ୍ୟାଗ କରି ରାଜନୀତିରେ ସମସ୍ତ ସମୟ ବିନିଯୋଗ କରୁଥିଲେ । ସେ ସମୟରେ ତାଙ୍କ ଘରଟି ଏକ ରାଜନୈତିକ ପରାମର୍ଶସ୍ଥଳୀ ରୂପରେ ପରିଣତ ହୋଇଥିଲା । ଦେଶର ଯୁବ ସମ୍ପ୍ରଦାୟଙ୍କୁ ପ୍ରଥମେ ଏହି କାର୍ଯ୍ୟରେ ନିଯୁକ୍ତ କରିବା ଆବଶ୍ୟକ ବୋଲି ସେ ଅନୁଭବ କରିଥିଲେ । ତେଣୁ ୧୯୨୧ ମସିହାରେ କଲିକତାଠାରେ ହୋଇଥିବା ଏକ ବିରାଟ ସାଧାରଣ ସଭାରେ ଜାତିର ଏପରି ଶୋଚନୀୟ ଅବସ୍ଥାରେ ଛାତ୍ର ସମାଜକୁ ଏହାର ଉଚିତ୍ ଜବାବ୍ ଦେବାପାଇଁ ଓ ଯଥାର୍ଥ ନେତୃତ୍ୱ ନେବା ପାଇଁ ସେ ଆହ୍ୱାନ ଦେଇଥିଲେ ଏବଂ ଯୁବଗୋଷ୍ଠୀ ଦେଶ ମାତୃକାଙ୍କ ଏପରି ଅବସ୍ଥାରେ ସଚେତନ ହେଲେହିଁ ଦେଶ ପରାଧୀନତାରୁ ମୁକ୍ତିଲାଭ କରି ପାରିବ ବୋଲି ସେ ଘୋଷଣା କରିଥିଲେ । ତତ୍କାଳୀନ ଯୁବକମାନଙ୍କ ନିମନ୍ତେ ଉଚ୍ଚ ଶିକ୍ଷାଲାଭ ପାଇଁ ଗୋଟିଏ ମହାବିଦ୍ୟାଳୟ ହେବା ଆବଶ୍ୟକ ବୋଲି କେତେକ ଛାତ୍ର ଦାବୀ କରନ୍ତେ, ମାସକ ମଧ୍ୟରେ ତାହା କରାଯିବ ବୋଲି ସେ ନିର୍ଭୀକ ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ସମୟ ମଧ୍ୟରେ ସେ ତାହାକୁ କାର୍ଯ୍ୟକାରୀ ମଧ୍ୟ କରିଥିଲେ ।

ଏହି କାର୍ଯ୍ୟ ପାଇଁ ସେ ବହୁ ଅନୁଷ୍ଠାନର କର୍ମକର୍ତ୍ତାମାନଙ୍କୁ ଅନୁରୋଧ କରି ନିରାଶ ହୋଇ ଶେଷରେ ନିଜେ ଏକ ସ୍ୱତନ୍ତ୍ର ଅନୁଷ୍ଠାନ ଗଢ଼ିବାର ନିଷ୍ପତ୍ତି ନେଇ ପ୍ରସ୍ତାବିତ ଜାତୀୟ କଲେଜ ପାଇଁ ସମସ୍ତ ଅର୍ଥ ଏକାକୀ ବହନ କରିଥିଲେ ଓ ବଙ୍ଗୀୟ ଜାତୀୟ ବିଦ୍ୟାୟତନ ନାମରେ ଏହାର ନାମକରଣ କରାଗଲା ଏବଂ ମହାତ୍ମାଗାନ୍ଧୀ ଏହାକୁ ଉଦ୍‌ଘାଟନ କରିଥିଲେ । ଚିତ୍ତରଞ୍ଜନଙ୍କ ଏପରି ମହାନ୍ କାର୍ଯ୍ୟକୁ ସାରା ଭାରତର ଲୋକେ ବହୁଳ ପ୍ରଶଂସା କରିଥିଲେ । ତାଙ୍କର ଅକୁଣ୍ଠ ତ୍ୟାଗ, ଦେଶବାସୀଙ୍କ ପ୍ରତି ସହିଚ୍ଛା ସହାନୁଭୂତିରୁ ଘୋର ଦେଶଭକ୍ତିର ପରିଚୟ ମିଳିଥାଏ ।

୧୯୨୧ ମସିହାରେ ଚିତ୍ତରଞ୍ଜନ ବଙ୍ଗଳାର ପ୍ରତ୍ୟେକ ଅଞ୍ଚଳ ବୁଲି ବୁଲି ସେ ଯୁବକମାନଙ୍କୁ ଜାତୀୟ ଆନ୍ଦୋଳନ ସମ୍ପର୍କରେ ବୁଝାଇଥିଲେ ଓ ପ୍ରତ୍ୟେକ ଗ୍ରାମରେ ଗୋଟିଏ ଲେଖାଏଁ କଂଗ୍ରେସ କମିଟି ସ୍ଥାପନ କରିବାକୁ ପରାମର୍ଶ ଦେଇଥିଲେ । ତାଙ୍କର ଏହିି ପ୍ରସ୍ତାବରେ ବହୁ ଆଇନଜୀବୀ ବୃତ୍ତି ଜୀବୀ ନିଜ ନିଜ ବୃତ୍ତି ଛାଡ଼ି ଦେଶ ସେବାରେ ଲାଗି ପଡ଼ିଲେ । ଚିତ୍ତରଞ୍ଜନଙ୍କ ଏହି ଉଦାତ୍ତ ଆହ୍ୱାନ ଛାତ୍ର ଓ ଯୁବ ସମାଜକୁ ଉଦ୍‌ବୁଦ୍ଧ କରିବା ସଙ୍ଗେ ସଙ୍ଗେ ହିନ୍ଦୁ ମୁସଲମାନ ସବୁ ଜାତିର ଲୋକେ ଏହାର ମହତ୍ତ୍ୱ ବୁଝିପାରି ତାଙ୍କର ପ୍ରସ୍ତାବ ଗ୍ରହଣ କରି ଜାତୀୟ ଆନ୍ଦୋଳନରେ ବିପୁଳ ସଂଖ୍ୟାରେ ଭାଗ ନେଇଥିଲେ । ଭାରତ ଏବଂ ବିଦେଶରେ ଥିବା ହଜାର ହଜାର ଛାତ୍ର ଓ ଯୁବକ ଚିତ୍ତରଞ୍ଜନଙ୍କ ନେତୃତ୍ୱରେ କାର୍ଯ୍ୟ କରିବାକୁ ଇଚ୍ଛା କରି ତାଙ୍କ ନିକଟକୁ ପତ୍ର ଲେଖିଥିଲେ ।

ସେହି ସମୟରେ କେମ୍ବ୍ରିଜ୍‌ରେ ଶିକ୍ଷାଲାଭ କରୁଥିବା ଅବସ୍ଥାରେ ଛାତ୍ର ସୁଭାଷ ବୋଷଙ୍କୁ ଚିତ୍ତରଞ୍ଜନଙ୍କ ଏହି ଆହ୍ୱାନ ବିଶେଷ ଉଦ୍‌ବୁଦ୍ଧ

କରିଥିଲା । ତେଣୁ ସେ ଏକ ଦୀର୍ଘ ପତ୍ର ଚିତ୍ତରଞ୍ଜନଙ୍କ ନିକଟକୁ ଲେଖି ନିଜର ଶ୍ରଦ୍ଧା ଓ ଭକ୍ତି ଜଣାଇଥିଲେ ଏବଂ ନିଜେ ତାଙ୍କ ଆନ୍ଦୋଳନରେ ଯୋଗ ଦେବାପାଇଁ ଇଚ୍ଛା ପ୍ରକାଶ କରିଥିଲେ । ସୁଭାଷ ତାଙ୍କ ପତ୍ରରେ ଲେଖିଥିଲେ ଯେ, ଯେଉଁମାନେ ମାତୃଭୂମିର ସେବାରେ ନିଜକୁ ଉତ୍ସର୍ଗ କରିଛନ୍ତି ସେମାନଙ୍କ ମଧ୍ୟରୁ ଆପଣ ହିଁ ସର୍ବଶ୍ରେଷ୍ଠ ହୋଇଥିବାରୁ ମୁଁ ଆପଣଙ୍କୁ ଏ ପତ୍ରଟି ଲେଖୁଛି । ଭାରତବର୍ଷରେ ଆପଣ ଯେଉଁ ଦେଶାତ୍ମବୋଧର ସ୍ରୋତ ପ୍ରବାହିତ କରାଇଛନ୍ତି ତାହାର ପ୍ରତିକ୍ରିୟା ବିଲାତରେ ମଧ୍ୟ ସ୍ପର୍ଶ କରିବାକୁ ଲାଗିଲାଣି, ମାତୃଭୂମି ନିମନ୍ତେ ତ୍ୟାଗ ଓ ସେବା କରିବା ଦିଗରେ ଆପଣ ହିଁ ଆଦର୍ଶ ବ୍ୟକ୍ତି । ମୋର ଯାହାକିଛି ସାମାନ୍ୟ ବୁଦ୍ଧି ଶିକ୍ଷା, ଶକ୍ତି ଓ ଉତ୍ସାହ ଅଛି, ସେ ସବୁ ସହିତ ଆପଣଙ୍କ ନିକଟରେ ମୁଁ ନିଜକୁ ସମର୍ପଣ କରୁଛି । ମୁଁ ବର୍ତ୍ତମାନ ଆଇ. ସି. ଏସ୍‌ରେ ଶିକ୍ଷାନବିଶ୍ ଭାବରେ କାର୍ଯ୍ୟ କରୁଥିବାରୁ ମୁଁ ଏକ ପ୍ରକାର ସରକାରୀ ଚାକିରିଆ । ଆପଣଙ୍କ ଅନୁମତି ପାଇଲେ ମୁଁ ଏହି ଦାୟିତ୍ୱ ତ୍ୟାଗ କରି ଆପଣଙ୍କ ସହିତ ଯୋଗ ଦେବାର ସୌଭାଗ୍ୟ ଲାଭ କରିବି । ସୁଭାଷଙ୍କ ଏହି ଚିଠିରୁ ସେ ସମୟରେ ଜାତୀୟ ଆନ୍ଦୋଳନରେ ଚିତ୍ତ-ରଞ୍ଜନଙ୍କ ପ୍ରଭାବ କିପରି ବ୍ୟାପକ ଥିଲା ସହଜରେ ଜଣାପଡ଼େ । ଆହୁରି ମଧ୍ୟ ରାଜନୈତିକ ଜୀବନରେ ରାଜନୀତିକୁ ହିଁ ଜୀବନର ମାର୍ଗ ରୂପରେ ଗ୍ରହଣ କରିବାରେ ସୁଭାଷଙ୍କ ପଥ ପ୍ରଦର୍ଶକ ଥିଲେ ଚିତ୍ତରଞ୍ଜନ ।

୧୯୨୮ ମସିହା ଜୁଲାଇ ୨୮ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟି ଓ କାର୍ଯ୍ୟକାରୀ କମିଟି ବୈଠକ ବମ୍ବେରେ ଅନୁଷ୍ଠିତ ହୋଇଥିଲା ଓ ସେଥିରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଗୃହୀତ ହୋଇ-

ଥିଲା । ଏହି ବୈଠକରେ ଗାନ୍ଧିଜୀ ଓ ଚିତ୍ତରଞ୍ଜନ ଦୁହେଁ ମିଳିମିଶି କାର୍ଯ୍ୟ କରିଥିଲେ । ପ୍ରଥମ ପ୍ରସ୍ତାବରେ ଭାରତବାସୀଙ୍କୁ ସେମାନଙ୍କ ଜନ୍ମଗତ ଅଧିକାର ସ୍ୱରାଜରୁ ବ୍ରିଟିଶ୍ ଶାସକଗଣ ବଞ୍ଚିତ କରି ଆସୁଥିବାରୁ ତାକୁ ଶକ୍ତିଶାଳୀ କରିବା ନିମନ୍ତେ ବିଭିନ୍ନ ପଦକ୍ଷେପମାନ ଗ୍ରହଣ କରାଯିବା ପାଇଁ ପ୍ରସ୍ତାବମାନ ରଖାଯାଇଥିଲା ।

ଦ୍ୱିତୀୟ ପ୍ରସ୍ତାବଟିରେ ବିଦେଶୀ ବସ୍ତ୍ର ଗୁଡ଼ିକ ସଂଗ୍ରହ କରି ସାଧାରଣରେ ପୋଡ଼ିବା ପାଇଁ ସୁପାରିଶ କରାଯାଇଥିଲା ଓ ଦେଶକୁ ବସ୍ତ୍ର (ବ୍ୟବହୃତ ଲୁଗା) ବିଷୟରେ ସ୍ୱାବଲମ୍ବୀ କରିବା ପାଇଁ ସାହାଯ୍ୟ ନିମନ୍ତେ ବିଭିନ୍ନ ପଦକ୍ଷେପମାନ ଗ୍ରହଣ କରିବା ବିଷୟରେ ଆଲୋଚନା ହୋଇଥିଲା । ପରେ ପରେ ପ୍ରଥମେ କଲିକତାଠାରେ ଚିତ୍ତରଞ୍ଜନଙ୍କ ନିବେଦନ ଫଳରେ ଜନସାଧାରଣ ବିଦେଶୀ ଲୁଗାଗୁଡ଼ିକ ଏକାଠି କରିଥିଲେ ଓ ମହାତ୍ମାଗାନ୍ଧୀ ନିଜେ ସେଥିରେ ନିଆଁ ଲଗାଇଥିଲେ । ଚିତ୍ତରଞ୍ଜନ ଆହୁରି ମଧ୍ୟ ମହାତ୍ମାଗାନ୍ଧୀ ଜନ୍ମ ଦିବସରେ ବଙ୍ଗଳା ଦେଶରୁ ଏକ ପତ୍ରିକା 'The Message of Bengali' ନାମକ ଏକ ପତ୍ରିକାରେ ଓ 'ବାଙ୍ଗଲାର୍ କଥା' ନାମକ ଏକ ସାପ୍ତାହିକ ପତ୍ରିକାରେ ଅନେକଟି ପ୍ରବନ୍ଧ ଲେଖି ଏହାର କାର୍ଯ୍ୟକ୍ରମ ଓ ନୀତି ବିଷୟରେ ବୁଝାଇଥିଲେ ।

୧୯୨୧ ନଭେମ୍ବର ୨୭ ତାରିଖରେ ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ବୈଠକ ବସି ଆଇନ୍ ଅମାନ୍ୟ ଆନ୍ଦୋଳନ ଚଳାଇବା ନିମନ୍ତେ ପ୍ରସ୍ତାବ ଗ୍ରହଣ କରାଯାଇ ଥିଲା ଓ ଏଥିରେ ଚିତ୍ତରଞ୍ଜନଙ୍କୁ ପୂର୍ଣ୍ଣକ୍ଷମତା ଅର୍ପଣ କରାଯାଇ ଥିଲା ।

ଅହିଂସା ଆନ୍ଦୋଳନକୁ ଅଧିକ ସକ୍ରିୟ କରିବାକୁ ମନସ୍ଥ କରି ଓ ସେଥି ନିମନ୍ତେ ଜେଲ୍ ଜୀବନ ଯାପନପାଇଁ ପ୍ରସ୍ତୁତ ହେଲେ । ତେଣୁ

ତିନି ଦିନ ଶେଷରେ ଖଟରେ ଶୋଇ ଜେଲ୍‌ରେ ମିଳୁଥିବା ଖାଦ୍ୟ-ଗୁଡ଼ିକକୁ ଖାଇବାକୁ ଅଭ୍ୟାସ କଲେ । ସତ୍ୟାଗ୍ରହ ଆନ୍ଦୋଳନ ସମୟରେ ତାଙ୍କ ଜ୍ୟେଷ୍ଠ ପୁଅ ମଧ୍ୟ ସତ୍ୟାଗ୍ରହୀମାନଙ୍କ ନେତୃତ୍ୱ ନେବାରୁ ଗିରଫ ହୋଇଥିଲେ, ତାଙ୍କ ପତ୍ନୀ ଓ ଭଉଣୀ ମଧ୍ୟ ଖଦଡ଼ଲୁଗା ବିକ୍ରି କରିବାକୁ ଯାଇ, ପୋଲିସ ହାତରେ ଗିରଫ ହୋଇ ଜେଲ୍ ବରଣ କରିଥିଲେ, ସେମାନଙ୍କ ପରିବାର ବର୍ଗଙ୍କ ଗିରଫଦାରୀ ସେ ସମୟରେ ସାଧାରଣ ଲୋକଙ୍କ ମନରେ ବିଶେଷ ପ୍ରଭାବ ପକାଇଥିଲା । ଫଳରେ ହଜାର ହଜାର ଯୁବକ ଓ ଛାତ୍ରଗଣ ସ୍ୱେଚ୍ଛାରେ କାରାବରଣ ପାଇଁ ପ୍ରସ୍ତୁତ ହୋଇଗଲେ । ଚିତ୍ତରଞ୍ଜନଙ୍କ ପତ୍ନୀ ବାସନ୍ତୀ ଦେବୀଙ୍କ ଗିରଫ ଫଳରେ ସମଗ୍ର ବଙ୍ଗ ଦେଶରେ ଉତ୍ତେଜନା ଖେଳିଗଲା; ମୁସଲମାନ୍ ଓ ହିନ୍ଦୁ ସହସ୍ର ସଂଖ୍ୟାରେ ଜାତୀୟ ଆନ୍ଦୋଳନରେ ଯୋଗ ଦେଲେ, ଏପରିକି ପୋଲିସ କର୍ମଚାରୀ (ଭାରତୀୟ)ମାନଙ୍କ ମଧ୍ୟରେ ଉତ୍ତେଜନା ଖେଳିଗଲା, କଳକାରଖାନାଗୁଡ଼ିକର ଶ୍ରମିକଗଣ ମଧ୍ୟ ବହୁ ସଂଖ୍ୟାରେ ସ୍ୱେଚ୍ଛା-ସେବକ ଭାବରେ ଯୋଗ ଦେଇ ଗିରଫ ହେବାକୁ ବାହାରିଲେ । ଏପରି ଘଟଣାରେ ସରକାର ବିଚଳିତ ହୋଇ ପୋଲିସ କର୍ମଚାରୀଙ୍କ ବେତନ ବୃଦ୍ଧି କରିବାକୁ ପରାମର୍ଶ ଦେଇଥିଲେ । ୧୯୨୧ ମସିହା ଡିସେମ୍ବରେ ଦଶ ତାରିଖ ଦିନ ଚିତ୍ତରଞ୍ଜନଙ୍କୁ ଗିରଫ କରାଗଲା । ଜେଲ ଯିବା ବାଟରେ ଦେଶବାସୀଙ୍କ ଉଦ୍ଦେଶ୍ୟରେ ସେ ଏକ ବାର୍ତ୍ତାଦେଇ କହିଥିଲେ —"ଯଦି ଆମର ଲକ୍ଷ୍ୟ ମହାନ୍ ହୋଇଥାଏ ତେବେ ହେ ମୋର ପ୍ରିୟ ଦେଶବାସୀ ବନ୍ଧୁଗଣ ! ଆମେ ପରିଣାମ ବିଷୟରେ ଆଦୌ ଚିନ୍ତିତ ହେବା ନାହିଁ, ସମ୍ପୂର୍ଣ୍ଣ ଅହିଂସା ବାଟକୁ ଗ୍ରହଣ କଲେହିଁ ଲକ୍ଷ୍ୟ ଆମର ନିଶ୍ଚୟ ପୂରଣ ହୋଇପାରିବ । ଏ ଦେଶର ସମସ୍ତ ପ୍ରାନ୍ତରେ ଦେଶ ପ୍ରେମର ଯେଉଁ ନିଆଁ ଜଳି ଉଠିଛି, ତାହା ଲିଭିବା ଏବେ ସହଜ ନୁହେଁ, ଆପଣମାନେ ସମସ୍ତେ ଏକ୍ ହୋଇ ବିଶ୍ୱାସର ସହିତ

ଆସେଇ ସ୍ୱଳନ୍ତୁ ।" ତାଙ୍କର ଏପରି ଉଦାତ୍ତ ଘୋଷଣା ଅଗଣିତ ଦେଶ ପ୍ରେମୀମାନଙ୍କୁ ଖୁବ ଉଦ୍ବୁଦ୍ଧ କରିବା ସଙ୍ଗେ ସଙ୍ଗେ ଏକ ନୂତନ ଶକ୍ତି ସଞ୍ଚାର କରିଥିଲା । ଏହାର କିଛିଦିନ ପରେ ତାଙ୍କୁ ପ୍ରେସିଡେନ୍‌ସୀ ଜେଲକୁ ନିଆଗଲା । ଜେଲ୍ ଭିତରେ ଦେଶବନ୍ଧୁଙ୍କର ବିଚାର ଆରମ୍ଭ ହେଲା । ଫୌଜଦାରୀ ଦଣ୍ଡବିଧି ସଂଶୋଧନର ଆଇନ୍ ଅନୁଯାୟୀ ଚିତ୍ତରଞ୍ଜନଙ୍କ ବିରୁଦ୍ଧରେ ଅଭିଯୋଗ ଆଣାଯାଇ ସାଧାରଣରେ ବିଚାର ହେବ ବୋଲି ନିଷ୍ପତ୍ତି ନିଆଗଲା । ବିଚାରରେ ତାଙ୍କୁ ଛଅ ମାସ କାରାଦଣ୍ଡରେ ଦଣ୍ଡିତ କରାଗଲା । ଯେଉଁ ବିଜ୍ଞାପନ ଦସ୍ତଖତ ଯୋଗୁଁ ତାଙ୍କୁ ଦଣ୍ଡ ଦିଆଯାଇଥିଲା, ତାହା ତାଙ୍କର ନୁହେଁ ବୋଲି ସେ ଦୃଢ଼-ଭାବରେ ଅସ୍ୱୀକାର କରିଥିଲେ ।

ଜେଲ୍‌ରେ ଥିବା ଅବସ୍ଥାରେ ସେ ଜ୍ୱର ରୋଗରେ ଆକ୍ରାନ୍ତ ହେଲେ ଓ କ୍ରମେ ଦୁର୍ବଳ ହୋଇ ପଡ଼ିଲେ । ଏଣେ ଅହମଦାବାଦ୍ କଂଗ୍ରେସ ଅଧିବେଶନରେ ସଭାପତି ଭାବରେ ଦେଶବନ୍ଧୁ ନିର୍ବାଚିତ ହୋଇଥିଲେ ? କିନ୍ତୁ ଜେଲ୍‌ରେ ଥିବାରୁ ତାଙ୍କ ଅନୁପସ୍ଥିତିରେ ଆଜମଲ୍ ଖାଁ, ଅଧିବେଶନରେ ସଭାପତି ଦାୟିତ୍ୱ ତୁଲାଇ ଥିଲେ । କାରାଗାରରେ ବନ୍ଦୀ ଅବସ୍ଥାରେ ଚିତ୍ତରଞ୍ଜନଙ୍କ ଅଧିକାଂଶ ସମୟ ବିଭିନ୍ନ ବିଷୟ ଲେଖାଲେଖିରେ ଓ ବନ୍ଧୁମାନଙ୍କ ସହିତ ଆଲୋଚନାରେ ବିତି ଯାଉଥିଲା । ଇତିହାସ, ରାଜନୀତି, ଅର୍ଥନୀତି ସମ୍ପର୍କୀୟ ପୁସ୍ତକମାନ ସେ ଅଧ୍ୟୟନ କରୁଥିଲେ । କାରାଗାର ମଧ୍ୟରେ ବନ୍ଧୁ ଓ ସହକର୍ମୀମାନଙ୍କ ସହ ଆଲୋଚନା ବେଳେ, ବନ୍ଧୁ ସମ୍ପର୍କରେ ସେ ତାଙ୍କ ମନକଥା ଅକପଟରେ ପ୍ରକାଶ କରୁଥିଲେ । ତାଙ୍କ ସଂସ୍ପର୍ଶରେ ଆସୁଥିବା ଲୋକମାନଙ୍କୁ ତାଙ୍କର ସ୍ୱଭାବ ସୁଲଭ ଆନ୍ତରିକତା, ନିରାଡ଼ମ୍ବରତା, ରସିକତା ଓ ସରଳତା ଅତ୍ୟନ୍ତ ପ୍ରଭାବିତ କରୁଥିଲା । ଆଲୋଚନା ପ୍ରସଙ୍ଗରେ ପ୍ରତ୍ୟେକ ବିଷୟକୁ ସେ ଅତି ସହଜ ଓ ସରସ କରିପାରୁଥିଲେ । ଜଣେ ବିଚକ୍ଷଣ ରାଜନୀତିଜ୍ଞ ହିସାବରେ

ତାଙ୍କର ମତ ଥିଲା ଯେ, ଦେଶର ସଂସ୍କାର ପ୍ରାଦେଶିକ ସ୍ତରରୁ ହେବା ଉଚିତ୍ । ବ୍ରିଟିଶ ରାଜ୍ୟଗୋଷ୍ଠୀ ବାହାରେ ଭାରତ ବର୍ଷର ସ୍ୱାଧୀନତାକୁ ସେ ବୃହାନ୍ତ କି ? ଏହି ପ୍ରଶ୍ନ ତାଙ୍କୁ ପଚରା ଯାଆନ୍ତେ, ତାର ଉତ୍ତରରେ ସେ କହିଥିଲେ—"ସେ ସ୍ୱାଧୀନତା ଚାହାନ୍ତି ଓ ସେ ସ୍ୱରାଜ ଉପରେ ପୂର୍ଣ୍ଣ ବିଶ୍ୱାସ କରନ୍ତି, କାରଣ ଏହାଦ୍ୱାରା ଭାରତର ଲୋକେ ନିଜ ଭାଗ୍ୟ ନିୟନ୍ତ୍ରଣ କରିବାପାଇଁ ପୂର୍ଣ୍ଣ ସ୍ୱାଧୀନତା ପାଇପାରିବେ ।" ସେହି ବର୍ଷ ଜେଲ୍‌ରୁ ମୁକ୍ତହୋଇ ଡେରାଡ୍ରୁନ୍‌ଠାରେ ଉତ୍ତର ପ୍ରଦେଶରେ ହୋଇଥିବା ରାଜନୈତିକ ସମ୍ମିଳନୀରେ ସେ ସଭାପତିତ୍ୱ କରି ତାଙ୍କ ଭାଷଣରେ ସତ୍ୟାଗ୍ରହଠାରୁ ଆରମ୍ଭ କରି ରାଜନୈତିକ ଆନ୍ଦୋଳନର ସମ୍ପୂର୍ଣ୍ଣ ଇତିହାସ ବର୍ଣ୍ଣନା କରି କହିଥିଲେ—ମୁଁ ସମାଜର କୌଣସି ନିର୍ଦ୍ଦିଷ୍ଟ ଶ୍ରେଣୀପାଇଁ ସ୍ୱରାଜ ଚାହୁଁନାହିଁ, ଭାରତରେ ସମସ୍ତ ଜନସାଧାରଣଙ୍କ ପାଇଁ ମୁଁ ସ୍ୱରାଜ ଚାହେଁ, ଏହାହିଁ ମୋର ଲକ୍ଷ୍ୟ ।'

ସର୍ବପ୍ରଥମେ ଭାରତରେ ଦେଶବନ୍ଧୁଙ୍କ ପରି ଜଣେ ନେତାହିଁ ପ୍ରଥମେ 'କଂଗ୍ରେସ ସମସ୍ତଙ୍କ ପାଇଁ ସ୍ୱରାଜ ଚାହୁଁଅଛି' ବୋଲି ଦୃଢ଼-ଭାବରେ ଘୋଷଣା କରିଥିଲେ । ଦେଶବନ୍ଧୁ ଓ ପଣ୍ଡିତ ମୋତିଲାଲ୍ ନେହେରୁ ଯେଉଁ ନୂତନ ଦଳ ଗଠନ କଲେ ତା'ର ନାମ 'କଂଗ୍ରେସ ଓ ଖିଲାପତ ସ୍ୱରାଜଦଳ' ରଖାଯାଇଥିଲା । ପରେ କଂଗ୍ରେସ ଓ ଖିଲାପତ୍ ଶବ୍ଦ ବାଦ୍ ଦେଇ କେବଳ 'ସ୍ୱରାଜଦଳ' ନାମରେ ଭାରତ ପ୍ରସିଦ୍ଧ ହେଲା ।

ଦେଶବନ୍ଧୁ ଚିତ୍ତରଞ୍ଜନ କଂଗ୍ରେସ କମିଟିଙ୍କ ଦ୍ୱାରା ପ୍ରସ୍ତାବିତ ବୈଠକରେ ସର୍ବସମ୍ମତି କ୍ରମେ ସଭାପତି ନିଯୁକ୍ତ କରାଯିବା ସଙ୍ଗେ ସଙ୍ଗେ ସ୍ୱରାଜ ଦଳର ଲୋକଙ୍କ ସହ ପରିବର୍ତ୍ତନ ବିରୋଧୀ ମହାତ୍ମା-

ଗାନ୍ଧୀ, ଆବଦୁଲ କଲାମ ଆଜାଦ୍, ଜବାହରଲାଲ୍ ନେହେରୁ ପ୍ରଭୃତିଙ୍କ ମଧ୍ୟରେ ମିଳାମିଶା କରୁଥିଲେ । ଦେଶବନ୍ଧୁ ତାଙ୍କ ରାଜନୈତିକ ଜୀବନର ପ୍ରାରମ୍ଭରୁ ହିଁ ବୁଝି ପାରିଥିଲେ ଯେ—'ହିନ୍ଦୁ ହିନ୍ଦୁ ଏବଂ ମୁସଲମାନମାନଙ୍କ ମଧ୍ୟରେ ବନ୍ଧୁତା ଓ ବୁଝାମଣା ସୃଷ୍ଟି ନ ହୁଏ, ତେବେ ଭାରତର ସ୍ୱାଧୀନତା ପାଇବା ଅତ୍ୟନ୍ତ କଷ୍ଟକର ହୋଇପଡ଼ିବ ।'

ସେତେବେଳେ କଲିକତାଠାରେ ମ୍ୟୁନିସପାଲ୍ ଆଇନ୍ ଅନୁଯାୟୀ ଅଳ୍ପ କେତେବର୍ଷ ପାଇଁ ମୁସଲମାନମାନଙ୍କୁ ସ୍ୱତନ୍ତ୍ର ସୁବିଧା ଦେବାର ବ୍ୟବସ୍ଥା କରାଯାଇଥିଲା । ଏହାର ପରିପ୍ରେକ୍ଷୀରେ ଚିତ୍ତରଞ୍ଜନ ଉଭୟ ସମ୍ପ୍ରଦାୟ ମଧ୍ୟରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା ପାଇଁ ମିଳିତ ଦାବୀ ଉପସ୍ଥାପିତ କରି ସେଥିଲାଗି ମିଳିତ ଭାବରେ କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ତାଙ୍କଦ୍ୱାରା ପ୍ରସ୍ତାବିତ ବିଖ୍ୟାତ ହିନ୍ଦୁ ମୁସଲମାନ ଚୁକ୍ତି ଦେଶ ଆଗରେ ଉପସ୍ଥାପିତ କରିଥିଲେ । ଏହି ଚୁକ୍ତି ଅତି ଉଚ୍ଚ ଆଦର୍ଶ ସମ୍ପନ୍ନ ହୋଇଥିଲେ ସୁଦ୍ଧା ଏହା ରାଜନୈତିକ ବିବାଦର ରୂପ ନେଇଥିଲା । ଉଭୟ ସମ୍ପ୍ରଦାୟ ମଧ୍ୟରେ ଥିବା ସମସ୍ତ ମତଭେଦ ଦୂର କରିବା ଉଦ୍ଦେଶ୍ୟରେ ଦେଶବନ୍ଧୁଙ୍କୁ ବହୁ ପରିଶ୍ରମ କରିବାକୁ ପଡ଼ିଥିଲା । ଏହି ଚୁକ୍ତି ମିଳିତ ଦାବୀ ଓ ମିଳିତ କାର୍ଯ୍ୟର ମୂଳଦୁଆ ବୋଲି ଘୋଷଣା କରିଥିଲେ । "ଅହିଂସାତ୍ମକ ଅସହଯୋଗ ଦ୍ୱାରା ସ୍ୱରାଜ ଲାଭ କରିବା ଅସମ୍ଭବ ଏବଂ ହିନ୍ଦୁ ମୁସଲମାନ ଉଭୟ ସମ୍ପ୍ରଦାୟ ମଧ୍ୟରେ ଏକତା ପ୍ରତିଷ୍ଠିତ ହେଲେ ହିଁ ଅହିଂସାତ୍ମକ ଅସହଯୋଗ ସଫଳ ହୋଇପାରିବ ବୋଲି ସେ ଦୃଢ଼ ସ୍ୱରରେ କହିଥିଲେ ।"

୧୯୨୪ ମସିହା ବେଳକୁ ତାଙ୍କର ପ୍ରଚଣ୍ଡ ପରିଶ୍ରମ ହେତୁ ଶରୀର କ୍ରମଶଃ ଅସୁସ୍ଥ ହୋଇ ପଡିଥିଲା, ତେଣୁ ସେତେବେଳେ ଡାକ୍ତରମାନଙ୍କ ଅନୁରୋଧ କ୍ରମେ ସେ ଗାଁ ଗହଳରେ ଗଠନ

ମୂଳକ କାର୍ଯ୍ୟ ଗୁଡ଼ିକ ଆଗେଇ ନେବାରେ ଅଧିକ ଦୃଷ୍ଟି ଦେଲେ । ଦେଶବନ୍ଧୁ ଆଇନ୍ ବ୍ୟବସାୟ ଛାଡ଼ିଦେବା ପରେ ସମ୍ପୂର୍ଣ୍ଣ ରାଜନୀତିରେ ନିଜକୁ ନିଯୁକ୍ତ କରିବା ମାତ୍ରେହିଁ କଲିକତାର ଜଣେ ସର୍ବୋଚ୍ଚ ଧନଶାଳୀ ବ୍ୟକ୍ତି ବଦଳରେ ସେ ସବୁଠୁ ଦରିଦ୍ରତମ ବ୍ୟକ୍ତିରେ ପରିଣତ ହୋଇଥିଲେ । ଏପରି ଅବସ୍ଥାର ସମ୍ମୁଖୀନ ହେବା ପରେ ମଧ୍ୟ ସେ ବହୁ ସଂଖ୍ୟକ କର୍ମୀଙ୍କୁ ସାହାଯ୍ୟ କରୁଥିବାରୁ ସେମାନଙ୍କ ସମସ୍ତ ଦାୟିତ୍ୱକୁ ମଧ୍ୟ ବହନ କରିଥିଲେ । ସେହି କର୍ମୀମାନଙ୍କୁ ସାହାଯ୍ୟ କରିବାକୁ ଯାଇ ତାଙ୍କର ଏକମାତ୍ର ବାସଗୃହଟି ମଧ୍ୟ ବନ୍ଧକ ପଡ଼ିଲା, ପରିଶେଷରେ ସେହି ବାସଘରଟିକୁ ଜାତି ଉଦ୍ଦେଶ୍ୟରେ ଦାନ କରିବାକୁ ଦେଶବନ୍ଧୁ ନିଷ୍ପତ୍ତି ନେଲେ । ଦରିଦ୍ର, ଅସହାୟ, ଅନାଥ, ବାଳକ ବାଳିକାମାନଙ୍କ ଶିକ୍ଷାର ପ୍ରସାର ଓ ସାହାଯ୍ୟ ଲାଗି ଯେ ଅବଶିଷ୍ଟ ଗଚ୍ଛିତ ଟଙ୍କାରେ ଗୋଟିଏ ପାଣ୍ଠି ଖୋଲିଥିଲେ । ତାଙ୍କର ମୃତ୍ୟୁ ପରେ ମହାତ୍ମାଗାନ୍ଧୀ ଏଥିରେ ଆଗ୍ରହ ପ୍ରକାଶ କରି 'ଦେଶବନ୍ଧୁ ସ୍ମାରକ ପାଣ୍ଠି' ରୂପରେ ଆଠଲକ୍ଷ ଟଙ୍କାର ଗୋଟିଏ ପାଣ୍ଠି ସଂଗ୍ରହ କରି ଦରିଦ୍ର ଅସହାୟ ଜନତା ଉଦ୍ଦେଶ୍ୟରେ ବିନିଯୋଗ କରିଥିଲେ । କ୍ରମେ ସ୍ୱାସ୍ଥ୍ୟ ତାଙ୍କର ପ୍ରଚୁର ପରିଶ୍ରମ, ଚିନ୍ତା, ହେତୁ କ୍ଷୀଣ ହୋଇପଡ଼ିଲା । ଦେଶବନ୍ଧୁ ଫରିଦ୍‌ପୁର ଠାରେ ଦେଶବାସୀଙ୍କ ଉଦ୍ଦେଶ୍ୟରେ ତାଙ୍କ ଜୀବନର ଶେଷବାଣୀ ଶୁଣାଇ-ଥିଲେ । ଯେଉଁ ବାଣୀ ଯୁଗ ଯୁଗ ଧରି ଭାରତୀୟ ଶାସନ ଇତିହାସରେ ଅମର ହୋଇ ରହିଛି । ସେ କହିଥିଲେ—ଯେ ଯଦି ଇଂରେଜ ସାମ୍ରାଜ୍ୟ ଭାରତବର୍ଷ ଉପରେ ନିଜର ଆଧିପତ୍ୟ ବଜାୟ ରଖିବାକୁ ଇଚ୍ଛା କରେ, ତେବେ ଭାରତବର୍ଷକୁ ସାମ୍ରାଜ୍ୟବାଦ ରୂପୀ ଶିକୁଳୀରୁ ଛିନ୍ନ କରିବା ଲାଗି ତାଙ୍କ ଜୀବନର ଶେଷ ନିଃଶ୍ୱାସ ଥିବା ପର୍ଯ୍ୟନ୍ତ ସେ ଚେଷ୍ଟା କରୁଥିବେ । ଏହା ପରେ ୧୯୨୫

ମସିହାରେ ଦାର୍ଜିଲିଙ୍ଗଠାରେ ସେ ବିଶେଷ ଅସୁସ୍ଥ ହୋଇପଡ଼ିଲେ । ସେହିଠାରେ ବିଶ୍ରାମ ନେଉଥିବା ସମୟରେ ମହାତ୍ମାଗାନ୍ଧୀଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା ଓ ତାଙ୍କ ସହିତ ସେ ଦୀର୍ଘ ସମୟ ଧରି ଭାରତର ରାଜନୈତିକ ଅବସ୍ଥା ବିଷୟରେ ଆଲୋଚନା କରିଥିଲେ । ବିଶେଷ ଭାବରେ ଚରଖା ଖଦି ଓ ଗ୍ରାମ ସଙ୍ଗଠନ ପାଇଁ ଗୋଟିଏ ଯୋଜନା ପ୍ରସ୍ତୁତ କରିଥିଲେ ଏବଂ ସେଥିପାଇଁ ଲକ୍ଷାଧିକ ଟଙ୍କା ମଧ୍ୟ ସଂଗ୍ରହ କରିଥିଲେ । ସମସ୍ତ ଗ୍ରାମ ସଙ୍ଗଠନ ବିଷୟ ଆଲୋଚନାରେ ଦେଶବନ୍ଧୁ ଚରଖା ଉପରେ ଗୁରୁତ୍ୱ ଦେଇ ଗ୍ରାମ ସଙ୍ଗଠନ କାର୍ଯ୍ୟର ଏହା ମୁଖ୍ୟ କେନ୍ଦ୍ର ହେବା ଉଚିତ ବୋଲି ମତ ପୋଷଣ କରିଥିଲେ । ଏହାପରେ ସେହିବର୍ଷ ଜୁନ ୯ ତାରିଖରେ ଗାନ୍ଧିଜୀ ସେଠାରୁ ଫେରିବା ପରେ ଚିତ୍ତରଞ୍ଜନଙ୍କ ସହିତ ତାଙ୍କର ଆଉ ଦେଖା ହୋଇ ନଥିଲା । ଜୁନ ୧୯୨୫ ମସିହା ୧୬ ତାରିଖ ଦିନ ଏହି ମହାନ୍ ଜନନାୟକ ଦେଶପ୍ରେମୀ ସେବ ଅବହେଳିତଙ୍କର ପରମ ବନ୍ଧୁ ଚିତ୍ତରଞ୍ଜନ ଜ୍ୱର ରୋଗରେ ଆକ୍ରାନ୍ତ ହୋଇ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ଭାରତମାତାଙ୍କର ଏପରି ବୀର, ଉତ୍ସାହୀ, ପୁତ୍ରଙ୍କ ଶେଷ ଦର୍ଶନ ପାଇଁ ଜାତି ଧର୍ମ ନିର୍ବିଶେଷରେ ଆବାଲ୍ୟ ବୃଦ୍ଧ ସବୁ ଶ୍ରେଣୀର ଲୋକେ ଶୋକାକୁଳ ହୋଇ କାନ୍ଦିବାକୁ ଲାଗିଲେ ।

ତାଙ୍କର ମରଣଖବର କଲିକତାରେ ପହଞ୍ଚିବା ମାତ୍ରେ ମହାତ୍ମା-ଗାନ୍ଧୀ ଶୋକାପ୍ଳୁତ ହୃଦୟରେ ତାଙ୍କ ଶବକୁ ନିଜ କାନ୍ଧରେ ବୋହି ଶ୍ମଶାନକୁ ଆଣିଥିଲେ । ତାଙ୍କର ଉଦ୍ୟୋଗରେ ଆୟୋଜିତ ଏକ ଶୋକ ସଭାରେ ଗାନ୍ଧିଜୀ ଅତ୍ୟନ୍ତ ଭାବପ୍ରବଣ ହୋଇ କହିଲେ— "ମୋର ପ୍ରିୟ ବନ୍ଧୁ ଭାରତମାତାଙ୍କ ଅବହେଳିତ ଅସହାୟ ସନ୍ତାନ ମାନଙ୍କ ପରମ ବନ୍ଧୁ ଦେଶବନ୍ଧୁ, ଜଣେ ଶ୍ରେଷ୍ଠ ମାନବ ଥିଲେ ।

ପ୍ରାୟ ୧୦ବର୍ଷ କାଳ ତାଙ୍କ ସହିତ ଘନିଷ୍ଠ ଭାବରେ ମିଶିବାର ସୁଯୋଗ ମୁଁ ଲାଭ କରିଛି । ତାଙ୍କ ସମ୍ପର୍କରେ ମୁଁ ଯେତେ ଅଧିକ ଆସିଛି, ତାଙ୍କ ପ୍ରତି ଶ୍ରଦ୍ଧା ମୋର ସେତିକି ମାତ୍ରାରେ ବୃଦ୍ଧି ପାଇଛି । ସେ ଭାରତର ସ୍ୱାଧୀନତା ଲାଭ ନିମନ୍ତେ ଦିନରାତି ଚିନ୍ତା କରୁଥିଲେ ଏବଂ କହୁଥିଲେ ଏହା ଭିନ୍ନ ତାଙ୍କର ଅନ୍ୟ କୌଣସି ବିଷୟରେ ଚିନ୍ତା ନ ଥିଲା । ସେ ଥିଲେ ନିର୍ଭୀକ, ସାହସୀ ଓ ସଂଗ୍ରାମୀ । ଯୁବଗୋଷ୍ଠୀଙ୍କ ପ୍ରତି ତାଙ୍କର ଅସୀମ ଶ୍ରଦ୍ଧା ବିଶ୍ୱାସ ପୂରି ରହିଥିଲା । ସମଗ୍ର ବଙ୍ଗ ରାଜ୍ୟରେ ତାଙ୍କର ସ୍ଥାନ ପୂରଣ କରିବା ନିମନ୍ତେ ଆଉ କେହି ନାହାନ୍ତି, ତାଙ୍କ ହୃଦୟରେ ହିନ୍ଦୁ, ମୁସଲମାନ୍, ଶିଖ, ଖ୍ରୀଷ୍ଟାନ୍ ପ୍ରଭୃତି ସମସ୍ତ ଜାତିଙ୍କ ପ୍ରତି ସମାନ ଭାବନା ସହାନୁଭୂତି ଭରିରହିଥିଲା । ତାଙ୍କର ମର ଶରୀର ନଷ୍ଟ ହୋଇଗଲେ ମଧ୍ୟ ଦେଶ ଜାତି ନିକଟରେ ସେ ଚିର ଅମର । ସମଗ୍ର ଜୀବନ କାଳରେ ତାଙ୍କର ତ୍ୟାଗ, ଦୟା; ସେବାର ପଛାନ୍ତର ନାହିଁ । ତାଙ୍କର ଏହିପରି ମହାନ୍ ଅମ୍ଳା ଚରିତ୍ର ଆମ୍ଭମାନଙ୍କ ନିକଟରେ ଦୃଷ୍ଟାନ୍ତ ରୂପରେ ରହି ଆମମାନଙ୍କୁ କର୍ମ ପ୍ରେରଣା, ଉତ୍ସାହ ଯୋଗାଉ ।'' ଗାନ୍ଧିଜୀଙ୍କ ଏହିପରି ମାର୍ମିକ ଉକ୍ତିରୁ ହିଁ ଦେଶବନ୍ଧୁଙ୍କ ପ୍ରତି ଥିବା ତାଙ୍କର ଶ୍ରଦ୍ଧା ଓ ସମ୍ମାନ ଭାବ ସହଜରେ ଜାଣି ହୁଏ ।

ଜୀବନର ମାତ୍ର ଛଅଟି ବର୍ଷ ସକ୍ରିୟ ଭାବରେ ଚିତ୍ତରଞ୍ଜନ ରାଜନୀତିରେ ଯୋଗଦାନ କରିଥିଲେ । ମାତ୍ର ଏହି ଅଳ୍ପ କେତୋଟି ବର୍ଷ ମଧ୍ୟରେ ସେ ଜଣେ ମହାନ୍ ଜନନାୟକ, ଦେଶଭକ୍ତ ରୂପରେ କୋଟି କୋଟି ଭାରତବାସୀଙ୍କ ହୃଦୟକୁ କିଣି ନେଇଥିଲେ । ତାଙ୍କର ଆଦର୍ଶର ଆଉ ଏକ ବୈଶିଷ୍ଟ୍ୟ ଏହି ଯେ—ଅଳ୍ପ ସମୟ ମଧ୍ୟରେ ସେ ଆନ୍ଦୋଳନ ମୁଖୀ ରାଜନୀତିରୁ ଉଚ୍ଚକୋଟିର ରାଷ୍ଟ୍ରନୀତିଜ୍ଞ ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ଜଣେ ପ୍ରଖ୍ୟାତ ଆଇନ୍‌ଜୀବୀ ଭାବରେ ସେ ଯେଉଁ

ମୋକଦ୍ଦମାଗୁଡ଼ିକ ଲଢ଼ୁଥିଲେ, ସେଥିରେ ବିଶେଷ ସାଫଲ୍ୟ ଅର୍ଜନ କରିଥିଲେ ଓ ଭାରତର ଜାତୀୟ ସ୍ୱାର୍ଥକୁ ଆଗେଇ ନେବାପାଇଁ ବ୍ରିଟିଶ ଆଇନକୁ ଯନ୍ତ୍ର ରୂପରେ ବ୍ୟବହାର କରୁଥିଲେ । ସେ ଜଣେ ଉଚ୍ଚ-କୋଟିର ଲେଖକ ଓ କବି ଥିଲେ । ତାଙ୍କର ଲେଖନୀ ଓ କର୍ମକ୍ଷେତ୍ରର ଗୋଟିଏ ମାତ୍ର ଲକ୍ଷ୍ୟ ଥିଲା ତାହା ହେଉଛି ଭାରତୀୟ ସଂସ୍କୃତିର ସୁରକ୍ଷା ଓ ତା'ର ସମୃଦ୍ଧି ସାଧନ କରିବା ଏବଂ ପାଶ୍ଚାତ୍ୟ ପ୍ରଭାବ ଆଧିପତ୍ୟ କବଳରୁ ଭାରତକୁ ମୁକ୍ତ କରିବା ।

ସାମାଜିକ ଏବଂ ଅର୍ଥନୈତିକ କ୍ଷେତ୍ରରେ ମଧ୍ୟ ଭାରତର ଉନ୍ନତି ପାଇଁ ସେ ଅକ୍ଳାନ୍ତ ପରିଶ୍ରମ କରିଥିଲେ । କାରଣ ସେ ବିଶ୍ୱାସ କରୁଥିଲେ ଯେ କେବଳ ସେହି ମାର୍ଗରେହିଁ ଭାରତ ତାର ମୁକ୍ତି ହାସଲ କରିପାରିବ ।

ଭାରତର ଜଣେ ଶ୍ରେଷ୍ଠ ବ୍ୟକ୍ତିର ପଦରୁ ନିଜକୁ ସାଧାରଣ ଜନତା ସହିତ ସାମିଲ୍ କରି ଜୀବନର ଶେଷ ସମୟ ପର୍ଯ୍ୟନ୍ତ କଟାଇଥିଲେ । ଚିତ୍ତରଞ୍ଜନ ଏପରି ଧନ ବିମୁଖ ସର୍ବତ୍ୟାଗୀ ପରୋପକାରୀ ଜନସେବକ ଥିଲେ ଯେ ତାଙ୍କର ନିଜର ବୋଲି କୌଣସି ଧନ ସମ୍ପତ୍ତି ନଥିଲା । ସେ ବିଶ୍ୱାସ କରୁଥିଲେ ଯେ ସ୍ୱରାଜର ଅର୍ଥ ହେଉଛି ଭାରତର କୋଟି କୋଟି ଜନତାପାଇଁ ଅଧିକରୁ ଅଧିକ ସୁଖ ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ଜୀବନ ଓ ସମୃଦ୍ଧି । ଜଣେ କବିର ଭାବୁକତା ଓ ଆଇନ୍‌ଜୀବୀର ବିଶ୍ଳେଷଣାତ୍ମକ ଚିନ୍ତାଧାରାକୁ ସେ ଭାରତର ଜାତୀୟ ସଂଗ୍ରାମ ପରିସର ମଧ୍ୟକୁ ଆଣି ଜନସେବାର ଯେଉଁ ଆଦର୍ଶ ଏବଂ ତ୍ୟାଗର ପରାକାଷ୍ଠା ଦେଖାଇଲେ, ତାହା ଦ୍ୱାରା ସାରା ଭାରତବର୍ଷର ଜନମନକୁ ସେ ଜୟ କରିପାରିଥିଲେ । ପ୍ରାୟ ସତିକ ଭିତରେ ବାରିଷ୍ଟର ସି. ଆର. ଦାସ ଦେଶର ପ୍ରେମ ବନ୍ଧୁ ତଥା ସେବକ ରୂପରେ ପରିଣତ ହେଲେ ।

ପରାଧୀନ ଭାରତୀୟ ରାଜନୀତିର ଅନ୍ୟ ଏକ ଦୁଃଖଦ ଘଟଣା ଏହା ଯେ – ଚିତ୍ତରଞ୍ଜନଙ୍କ ଜୀବନର ଯେତେବେଳେ ଚରମ ଉଲ୍ଲେଖମୟ ମୂହୂର୍ତ୍ତ ଠିକ୍ ସେତିକବେଳେ ମାତ୍ର ୫୫ ବର୍ଷ ବୟସରେ ସେ ଇହଧାମ ତ୍ୟାଗକରି ଚାଲିଗଲେ । ଆହୁରି ମଧ୍ୟ ଦେଶର ସ୍ୱାଧୀନତାପାଇଁ ପ୍ରଥମେ ତାଙ୍କର ଆପ୍ରାଣ ଉଦ୍ୟମରେ ଯେତେବେଳେ ଭାରତର ଲକ୍ଷ୍ୟ ଓ ବ୍ରିଟିଶ୍ ଶାସକମାନଙ୍କ ପ୍ରତି ସେମାନଙ୍କ ମନୋଭାବ ପରିବର୍ତ୍ତନର ଶୁଭ ସୂଚନା ମିଳୁଥିଲା ସେହି ସମୟରେହିଁ ଏପରି ଦାରୁଣ ବିପର୍ଯ୍ୟୟ ଘଟିଗଲା ।

ତାଙ୍କର ଉଦାର କାର୍ଯ୍ୟକଳାପ ଓ ନୀତି ବଳରେହିଁ ଦେଶର ଦୁଇଟି ପ୍ରଧାନ ସମ୍ପ୍ରଦାୟଙ୍କ ମଧ୍ୟରେ ପାରସ୍ପରିକ ବୁଝାମଣା ଓ ଆନ୍ତରିକତାର ବାତାବରଣ ସୃଷ୍ଟି ହୋଇଥିଲା । ତାଙ୍କ ପୂର୍ବରୁ ଅନ୍ୟ କୌଣସି ନେତା ହିନ୍ଦୁ ଓ ମୁସଲମାନମାନଙ୍କ ମନକୁ ଜୟ କରିପାରି ନଥିଲେ, ସେ ସମୟରେ ବହୁ ବିଶିଷ୍ଟ ନେତାଙ୍କ ପ୍ରାଥମିକ ପର୍ଯ୍ୟାୟରେ ପ୍ରବଳ ବିରୋଧ ସତ୍ତ୍ୱେ ଦେଶବନ୍ଧୁ କଂଗ୍ରେସକୁ ଯେଉଁଭଳି ଭାବରେ ନିଜ ମତବାଦରେ ଦୀକ୍ଷିତ କରାଇ ପାରିଥିଲେ, ସେଥିରୁ ତାଙ୍କର ନିଷ୍ଠା, ଧୈର୍ଯ୍ୟ ଓ ସାହସିକତାର ଯଥେଷ୍ଟ ପ୍ରମାଣ ମିଳିଥାଏ । ଏହି ଯୁଗ ପ୍ରକୃଷ୍ଟ ଦେଶସେବୀ ଜଣେ ବାସ୍ତବବାଦୀ ଓ ଆଦର୍ଶବାଦୀ ବ୍ୟକ୍ତି ଥିଲେ । କେଉଁ ଉପାୟ ଅବଲମ୍ବନ କଲେ ଲକ୍ଷ୍ୟ ସଫଳ ହେବ ଓ କେତେ ପରିମାଣରେ ସଫଳତା ଲାଭ ହେବ । ଏହି ଦୁଇଟି ବିଷୟକୁ ଭିତ୍ତିକରି ଦେଶ ଓ ଜାତିର ହିତପାଇଁ ପ୍ରୟୋଗ କରୁଥିବା ନିର୍ଦ୍ଦିଷ୍ଟ ନୀତିଗୁଡ଼ିକ ମାଧ୍ୟମରେ ଲକ୍ଷ୍ୟ ହାସଲ କରିବାର କୌଶଳକୁ ଜାଣି ପାରୁଥିଲେ । ଜୀବନର ଶେଷକ୍ଷଣ ପର୍ଯ୍ୟନ୍ତ ସ୍ୱାଧୀନତାର ସ୍ୱପ୍ନକୁ ଓ ଲୋକମାନଙ୍କ ନ୍ୟାଯ୍ୟ ଅଧିକାରକୁ ସଫଳାୟିତ କରିବାପାଇଁ ପ୍ରାଣ ପଣେ ଚେଷ୍ଟା

କରିଥିଲେ । ଏଥିପାଇଁ ତାଙ୍କୁ ବହୁ ବାଧାବିଘ୍ନ ଅପବାଦ ଓ ପ୍ରତି-ରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲେ ମଧ୍ୟ ସେଥିରେ ସେ ତିଳେମାତ୍ର ବିଚଳିତ ହୋଇ ନଥିଲେ ! ତ୍ୟାଗପୂତ ଏକନିଷ୍ଠ ଏହି ମହାନ୍ ଜନନାୟକଙ୍କର ପବିତ୍ର ଗୌରବ ଗାଥା ଯେତେଥର ପଢ଼ିଲେ ମଧ୍ୟ ଅତୃପ୍ତି ଆସେ ନା ।

ସ୍ୱାଧୀନତା ସଂଗ୍ରାମର ଗୋଟିଏ ପର୍ଯ୍ୟାୟରେ ମହାତ୍ମା ଗାନ୍ଧୀଙ୍କ ସହିତ ତାଙ୍କର ମତଭେଦ ଦେଖା ଦେଇଥିଲେ ସୁଦ୍ଧା ବ୍ରିଟିଶ୍ ସାମ୍ରାଜ୍ୟର ପ୍ରଭୁତ୍ୱକୁ ନଷ୍ଟକରି ଓ ଦେଶର ଅଗଣିତ ଜନତାର ଦୁଃଖ ଦୁର୍ଦ୍ଦଶା ଦୂର କରିବା ଲକ୍ଷ୍ୟରେ ଉଭୟେ ଏକମତ ଥିଲେ । କିନ୍ତୁ କଂଗ୍ରେସର ଯେଉଁ ଗୋଷ୍ଠୀ ଲୋକ ପ୍ରତିନିଧି ଭାବରେ ବିଧାନ ପରିଷଦ ଦଖଲ କରିବାପାଇଁ ପ୍ରବଳ ଉତ୍ସାହର ସହ ଚାହାଁଉଥିଲେ, ସେମାନଙ୍କର ମୁଖ୍ୟନେତା ଥିଲେ ଚିତ୍ତରଞ୍ଜନ । ବାସ୍ତବିକ୍ ଚିତ୍ତରଞ୍ଜନ ମହାତ୍ମାଗାନ୍ଧିଙ୍କ ଅହିଂସା ନୀତିର ମୂଳଧାରାରେ ବିଶ୍ୱାସ ରଖୁଥିଲେ ମଧ୍ୟ ଗାନ୍ଧିଜୀଙ୍କ ନରମପନ୍ଥୀ ମନୋଭାବରେ ତାଙ୍କର ଆସ୍ଥା ନଥିଲା । ପରାଧୀନ ଭାରତରେ କୋଟି କୋଟି ଜନତାଙ୍କୁ ଦୀର୍ଘ କାଳଧରି ସାମାଜିକ ଅର୍ଥନୈତିକ, ରାଜନୈତିକ କ୍ଷେତ୍ରରେ ବିପର୍ଯ୍ୟସ୍ତ କରୁଥିବା ଓ ସେମାନଙ୍କର ଶ୍ରେଷ୍ଠ ସମ୍ପଦ ସ୍ୱାଧୀନତାକୁ କ୍ଷୁଣ୍ଣ କରୁଥିବା ବ୍ରିଟିଶ୍ ଶାସକମାନଙ୍କ ପ୍ରତି ଚରମପନ୍ଥୀ ମନୋଭାବର ସେ ପୃଷ୍ଠପୋଷକ ଥିଲେ । ତେଣୁ କେତେକ ବିଷୟରେ ଗାନ୍ଧିଜୀଙ୍କ ସହିତ ନୀତିଗତ ମତଭେଦ ତାଙ୍କର ରହିଥିଲା । ତଥାପି ମହାତ୍ମା ଗାନ୍ଧିଙ୍କ ଆଦର୍ଶ ଓ ନୀତିକୁ ଶ୍ରଦ୍ଧା ଚକ୍ଷୁରେ ଦେଖୁଥିଲେ ଓ ତାଙ୍କୁ ଘୋର ସମ୍ମାନ ଦେଉଥିଲେ । ଅହିଂସା ନୀତି ଏକ କାଳକ୍ଷେପଣ ନୀତି ହୋଇଥିବାରୁ, ରାଜନୀତିରେ ଦୀର୍ଘ କାଳଧରି ବିଭିନ୍ନ କ୍ଷେତ୍ରରେ ଏହାକୁ ଆଦର୍ଶ

ରୂପରେ ରହି ଆସୁଥିଲେ ବ୍ରିଟିଶ ଶାସକମାନେ ଆଦ୍ୟର ଉତ୍ୟକ୍ତ ଓ କୂଟକୌଶଳ ଚକ୍ରାନ୍ତରେ ଦେଶବାସୀଙ୍କୁ ବିଭ୍ରାନ୍ତ କରିବାକୁ ସୁଯୋଗ ପାଇବେ ବୋଲି ସେ ବିଶ୍ୱାସ କରୁଥିଲେ । ତେଣୁ ଆବଶ୍ୟକ ସ୍ଥଳେ ଉଗ୍ର ମନୋଭାବ କଠୋର ବୃତ୍ତିରେ ସେ ଆସ୍ଥା ରଖୁଥିଲେ ! ଦେଶବନ୍ଧୁଙ୍କ ଅତ୍ୟୁଚ୍ଚ ମନୋବଳ ହିଁ ତାଙ୍କୁ ସମସ୍ତ କ୍ଷେତ୍ରରେ ସଫଳତା ଆଣି ଦେଉଥିଲା । ସମଗ୍ର ଉତ୍ତର ପୂର୍ବ ଭାରତ ଓ ଦକ୍ଷିଣାଞ୍ଚଳର ନେତୃତ୍ୱ ସ୍ଥାନରେ ଚିତ୍ତରଞ୍ଜନ ସେତେବେଳେ ଦେଶବାସୀମାନଙ୍କ ମନରେ ଓ ଯୁବଗୋଷ୍ଠୀଙ୍କ ମଧ୍ୟରେ ଯଥେଷ୍ଟ ପ୍ରଭାବ ସୃଷ୍ଟି କରିପାରିଥିଲେ । ନବଚେତନା ଜାତୀୟ ଜାଗରଣ, ଜାତୀୟ ବିକାଶ ଗଠନ କ୍ଷେତ୍ରରେ ତାଙ୍କର ମହନୀୟ ଚିନ୍ତାଧାରା କାଳ କାଳଧରି ସମଗ୍ର ଦେଶବାସୀଙ୍କ ହୃଦୟରେ ସ୍ପନ୍ଦିତ ହେଉଥିବ । ଜଣେ ନିର୍ଭୀକ, ଆତ୍ମବିଶ୍ୱାସୀ, ସ୍ୱାଭିମାନୀ, କର୍ମୀ, ବୁଦ୍ଧିମାନ୍ ବ୍ୟକ୍ତି ତାଙ୍କର ଅଫୁରନ୍ତ ଶକ୍ତିକୁ ତିଳତିଳ କରି ଭାରତମାତାଙ୍କ ଚରଣରେ ଉତ୍ସର୍ଗ କରି ଯାଇଛନ୍ତି । ତାଙ୍କର ମୃତ୍ୟୁ ସମ୍ବାଦ ଶୁଣି ତତ୍କାଳୀନ ବନ୍ଧୁ ଜନନାୟକ, ସଂଗ୍ରାମୀ, ଦେଶପ୍ରେମୀ, କବି, ଯୁବଗୋଷ୍ଠୀ ଅସହାୟ ହୋଇ ପଡ଼ିଥିଲେ । ଏପରି ମହାନାୟକଙ୍କ ଅନ୍ତିମ ଶଯ୍ୟାରେ ବିଶ୍ୱକବି ରବୀନ୍ଦ୍ର ନାଥ ଆବେଗପୂର୍ଣ୍ଣ କଣ୍ଠରେ କହିଥିଲେ—'ଏନେ ଛିଲେ ସାଥେ କୋରେ

ମୃତ୍ୟୁ ହୀନ ପ୍ରାଣ୍,
ମରଣେ ତାହାଇ ତୁମି
କୋରେ ଗେଲେ ଦାନ୍ ।'

ବାସ୍ତବିକ୍ ଯେଉଁ ମୃତ୍ୟୁହୀନ ଅମର ଶାଶ୍ୱତ ପ୍ରାଣ (ଆତ୍ମା) ଈଶ୍ୱର ପ୍ରତ୍ୟେକ ଜୀବକୁ ଦେଇଛନ୍ତି ସେହି ଚିରନ୍ତନ ପ୍ରାଣକୁ ନିଜର

ଗୌରବମୟ କୀର୍ତ୍ତି ବଳରେ ଜଗତରେ ଚିର ଅମଳିନ କରି ସେ ରଖିଦେଇଗଲେ । ତେଣୁ ହେ ମହାନାୟକ ! ଦେଶମାତାଙ୍କ ଯୋଗ୍ୟ ସନ୍ତାନ ! ସଫଳ ସଂଗ୍ରାମୀ ! ତ୍ୟାଗୀ ସେବକ ! ତୁମର ନିରଳସ ଆଦର୍ଶ ବହୁଳ କର୍ମମୟ ଜୀବନର ପ୍ରତ୍ୟେକ ଆଚରଣ ଆଜି ଯୁବ ସମାଜକୁ ଅନୁପ୍ରାଣିତ କରୁ, ସେମାନଙ୍କୁ ଜାତୀୟତା ବୋଧରେ ଉଦ୍‌ବୁଦ୍ଧ କରୁ, ତ୍ୟାଗପୂତ ଉଦାର ନିରାଡମ୍ବର ଜୀବନ ଯାପନପାଇଁ ଉତ୍ସାହିତ କରୁ ।

ଜୟହିନ୍ଦ

— — —